# ସୂଚୀ



ପ୍ରଥମ ସଂସ୍କରଣ ୧୯୯୧
ପୁନର୍ମୁଦ୍ରଣ ୧୯୯୫

ପ୍ରକାଶକ
ସୁନନ୍ଦା ପ୍ରକାଶନ, ବାଲୁବଜାର, କଟକ ୭୫୩୦୦୨

ମୁଦ୍ରଣ
ଜଗନ୍ନାଥ ପ୍ରୋସେସ୍, କଟକ
ମୂଲ୍ୟ : ଟ ୧୨.୦୦

ପରିବେଶକ
ବିଦ୍ୟାପୁରୀ, ବାଲୁବଜାର, କଟକ

# କୁହୁକ ଝଙ୍କମଣି

ଜଣେ ବୀର ସିପାହି ଯୁଦ୍ଧରୁ ଫେରୁଥାଏ । ବାଏଁ ଡାଏଁ, ବାଏଁ ଡାଏଁ କରି ସେ ଚାଲିଛି, ବାଟରେ ଜଣେ ବୁଢ଼ୀ ସାଥିରେ ଦେଖା ହୋଇଗଲା । ବୁଢ଼ୀ କହିଲା, ''ସାବାସ ସିପେଇ ପୁଅ, ସାବାସ ! ଏତେ ଲୋକ ଦେଖିଥିଲି, ହେଲେ ତୋ ପରି ଟାଣୁଆ ଲୋକ ଦେଖି ନ ଥିଲି । ତୋ କାନ୍ଧରେ କେତେ ବଡ଼ ଥଳି ! ଅଣ୍ଟାରେ କି ସୁନ୍ଦର ଖଣ୍ଡା ! ସତ କହୁଛି, ତୋ' ପରି ଲୋକ ଯେତେ ଲୋଡ଼ିବ, ସେତେ ପାଇବ ।''

କିନ୍ତୁ ସେ ଯେ ଗୋଟିଏ ଡାଆଣୀ ବୁଢ଼ୀ, ସିପାହି ବୀର ତାହା ଜାଣେନା । ସେ ଖୁସୀ ହୋଇ କହିଲା, ''ତୋ ତୁଣ୍ଡ ସୁତୁଣ୍ଡ ହେଉ ଲୋ ମାଉସୀ ।''

ସଡ଼କ ଧାରରେ ଗୋଟିଏ ବଡ଼ ଗଛ ଥାଏ । ଗଛକୁ ଦେଖାଇ ବୁଢ଼ୀ କହିଲା, ''ଏ ଗଛଟା ସିନା ବଡ଼, ହେଲେ ଯା'ଗଣ୍ଡି ଭିତରଟା କୋରଡ଼ । ଉପରକୁ ଚଢ଼ିଗଲେ ଦେଖିବୁ କୋରଡ଼ ଭିତରକୁ ବାଟ ଫିଟିଛି । ତୁ ସେ ଭିତରେ ପଶି ତଳକୁ ଚାଲିଯିବୁ । ମୁଁ ତୋ ଅଣ୍ଟାରେ ଗୋଟିଏ ଦଉଡ଼ି ବାନ୍ଧି ଦେଇଥିବି ଯେ, ତୁ ଡାକିବା ମାତ୍ରେ ଉପରକୁ ଟାଣି ଆଣିବି ।''

ବୁଢ଼ୀକଥା ଶୁଣି ସିପାହି ଗଛମୂଳେ ବସିପଡ଼ିଲା ।

ପଚାରିଲା, "ସେ ଭିତରେ ପଶି ମୁଁ କଣ କରିବି ଯେ ?"

"କାହିଁକି !! ଟଙ୍କା ସୁନା ଆଣିବୁ ।" ଏପରି କହି ବୁଢ଼ୀ ବୁଝାଇ ବସିଲା, "ଶୁଣ, କୋରଡ଼ ତଳକୁ ଓହ୍ଲାଇ ପଡ଼ିଲେ ଦେଖିବୁ, ସେ ଭିତରେ ତିନିଟି କୋଠରି ଅଛି । ସବୁ କୋଠରିରେ ତାଲା ପଡ଼ିଛି, ହେଲେ ତାଲାରେ ଚାବି ଲାଗିଛି । ପ୍ରଥମ କୋଠରି ଖୋଲିଲେ ଦେଖିବୁ ସେ ଭିତରେ ଗୋଟିଏ ବଡ଼ ସିନ୍ଦୁକ ଥୁଆହୋଇଛି । ତା'ଉପରେ ଗୋଟିଏ ଡାହାଳ କୁକୁର ବସିଛି । ତାକୁ ମୋଟେ ଡରିବୁନି, ହେଇଟି, ମୋର ଏ ଓଢ଼ଣିଟି ନେଇଥିବୁ; ସେ କୁକୁରକୁ ଆଣି ଏ ଓଢ଼ଣି ଉପରେ ବସାଇଦେଲେ ସେ ଉଁ କି ଚୁଁ କିଛି କରିବନି । ସେ ତାର ବସିଥିବ; ତୁ ସିନ୍ଦୁକ ଖୋଲି ଯେତେ ପାରିବୁ ସେତେ ପଇସା ନେଇ ଆସିବୁ । ସେଥିରେ ଖାଲି ତମ୍ବା ପଇସା ଭର୍ତ୍ତି ହୋଇଛି ।"

ସିପାହି ପଚାରିଲା, "ସତେ ?"

ବୁଢ଼ୀ କହିଲା, "ଖାଲି ତମ୍ବା ପଇସା ଭର୍ତ୍ତି ହୋଇଛି । ନାହିଁ ଯଦି ତୁ ରୁପା ଟଙ୍କା ଚାହୁଁଚୁ, ତେବେ ଦ୍ୱିତୀୟ କୋଠରିକୁ ଚାଲିଯିବୁ । ସେଠାରେ ବି ସିନ୍ଦୁକଟିଏ ଅଛି । ତା ଉପରେ ବସିଛି ଏକ ଭୀଷଣ କୁକୁର । କିନ୍ତୁ ତାକୁ ଟେକି ଆଣି ମୋ ଓଢ଼ଣି ଉପରେ ବସାଇଦେଲେ ସେ ତୁନିମୁନି ହୋଇ ରହିଯିବ । ତୁ ସେ ସିନ୍ଦୁକରୁ ଯେତେ ପାରିବୁ ସେତେ ରୁପାଟଙ୍କା ନେଇ ଆସିବୁ ।"

ସିପାହି କହିଲା, "ତୃତୀୟ କୋଠରିରେ ବି ସିମିତି ଥିବ ?"

ବୁଢ଼ୀ କହିଲା, "ହଁ, ତୃତୀୟ କୋଠରିରେ ବି ବଡ଼ ସିନ୍ଦୁକଟିଏ ଅଛି । ତା ଉପରେ ବି ଗୋଟିଏ ମସ୍ତବଡ଼ କୁକୁର

ଜଗିବସିଛି । ତା ଆଖିଦିଇଟା ପାହାଡ଼ ପରି । କିନ୍ତୁ ତାକୁ ଆଣି ମୋ ଓଢ଼ଣି ଉପରେ ବସାଇଦେଲେ ତା ରାଗ ଭାଙ୍ଗିଯିବ । ତୁ ସେ ସିନ୍ଦୁକ ଖୋଲି ଯେତେ ଇଚ୍ଛା ସେତେ ସୁନାମୋହର ନେଇ ଆସିବୁ ।''

ସବୁ ଶୁଣିସାରି ସିପାହି ପଚାରିଲା, ''ଆଲୋ ମୁଁ ତ ଟଙ୍କାସୁନା ଆଣିବି; ତତେ କ'ଣ ଦେବି କହିଲୁ ?''

ବୁଢ଼ୀ କହିଲା, ''ମୁଁ ସେଥିରୁ କାଣିକଉଡ଼ିଟିଏ ବି ନେବି ନାହିଁ ।''

ସିପାହି ପଚାରିଲା, ''ଆଉ ?''

ବୁଢ଼ୀ କହିଲା, ''ଗଲାଥର ସେ କୋରଡ଼ରେ ମୋ ଆଇ ପଶିଥିଲା; ସେ ତା ଝକମକିଟି ସେ ଭିତରେ ଛାଡ଼ିଦେଇ ଆସିଛି । ଆସିଲାବେଳେ ତୁ ଟିକିଏ ମନେ ପକାଇ ସେଇଟାକୁ ନେଇ ଆସିଥିବୁ । ସେହି ମୋର ଲକ୍ଷେ ।''

ସିପାହି କହିଲା, ''ଠିକ୍ ଅଛି । ଦଉଡ଼ି ଆଣି ମୋ ଅଣ୍ଟାରେ ବାନ୍ଧି ଦେ; ମୁଁ ଯାଇ ଶୀଘ୍ର କାମ ସାରିଦିଏ ।''

ବୁଢ଼ୀ ତା ଅଣ୍ଟାରେ ଦଉଡ଼ିଟିଏ ବାନ୍ଧିଦେଲା । ସେ ବୁଢ଼ୀର ଓଢ଼ଣିଟି ଧରି ଗଛରେ ଚଢ଼ିଗଲା । ଉପରକୁ ଯାଇ ସିପାହି ଦେଖେ ତ, ସତକୁ ସତ କୋରଡ଼ ଭିତରକୁ ବାଟ ଫିଟିଛି । ସେହି ବାଟ ଧରି ସେ କୋରଡ଼ ତଳକୁ ଚାଲିଗଲା । ଦେଖିଲା ସେ ଭିତରେ ଅନେକ ଦୀପ ଜଳୁଛି; ଭିତରଟା ଦିନ ପରି ତୋଫା ହୋଇଛି । ସେ ଭିତରେ ବୁଢ଼ୀ କହିଥିବା ପରି ତିନିଟି କୋଠରି ମଧ୍ୟ ଥାଏ । ସିପାହି ଆଉ ବିଳମ୍ବ ନ କରି ପ୍ରଥମ କୋଠରିଟି ଖୋଲିଦେଲା । ଦେଖିଲା ସେ ଭିତରେ ସତରେ ସିନ୍ଦୁକଟିଏ ଅଛି; ସିନ୍ଦୁକ ଉପରେ ତାହାଳ କୁକୁରଟିଏ ବସି ମଟମଟ କରି ଚାହିଁଛି-ସତେ ଯିମିତି ଏଇ

ଲାଗେ ମାଡ଼ିବସିବ । କିନ୍ତୁ ସିପାହି କାହିଁକି ତାକୁ ଡରନ୍ତା ? ସେ ବୁଢ଼ୀର ଓଢ଼ଣିଟି ତଳେ ବିଛାଇଦେଲା । ତାପରେ ଏକା କ୍ଷେପାକେ କୁକୁରଟାକୁ ଟେକିଆଣି ଓଢ଼ଣି ଉପରେ ବସାଇଦେଲା । କୁକୁର ଦେହରେ କୁହୁକ ଲାଗିଗଲା କି କଣ, ସୁନାପିଲାଟିଏ ପରି ବସିପଡ଼ିଲା ।

ସିପାହି ଏଥର ସିନ୍ଦୁକ ଖୋଲିଦେଲା । ସତରେ ସେଥିରେ ଖାଲି ତମ୍ବାପଇସା ଝୁନ୍ଦିହୋଇ ରହିଥାଏ । ସେ ନିଜ ମୁଣିରେ ମୁଣିଏ ପଇସା ଭରିଦେଇ କୁକୁରକୁ ସିନ୍ଦୁକ ଉପରେ ବସାଇଦେଲା । ଏଥର ବୁଢ଼ୀକଥା ପରଖିବାକୁ ସେ ଦ୍ୱିତୀୟ କୋଠରିକୁ ଚାଲିଗଲା ।

ସତକୁ ସତ ଦ୍ୱିତୀୟ କୋଠରିରେ ବି ସିନ୍ଦୁକଟିଏ ଥାଏ । ତା ଉପରେ ବି ମସ୍ତବଡ଼ କୁକୁରଟିଏ ବସିଥାଏ । ସେ କୁକୁରର ଆଖିଦୁଇଟା କୁମ୍ଭାରଚକ ପରି ଘୂରିବୁଲୁଥାଏ । ମଣିଷ ଡରିଯିବା କଥା । କିନ୍ତୁ ସିପାହି ଜାଣେ, ଯେ ଡରିବ ସେ ମରିବ । ତେଣୁ ସେ ବୁଢ଼ୀର ଓଢ଼ଣିଟି ତଳେ ପାରିଦେଇ କୁକୁରକୁ କହିଲା, "ମଣି, ତୁ ଆଉ ଇମିତି ଆଖି ଦେଖାନା ।" ଏପରି କହୁ କହୁ ସେ କୁକୁରକୁ ଟେକିଆଣି ଓଢ଼ଣି ଉପରେ ବସାଇଦେଲା । କୁକୁର ଚୁପ୍ ହୋଇ ବସିଲାରୁ ସିପାହି ଯାଇ ସିନ୍ଦୁକ ଖୋଲିଦେଲା । ସେ ଭିତରେ ଖାଲି ନୂଆ ରୁପାଟଙ୍କାଗୁଡ଼ାକ ଚକମକ କରୁଥାଏ । ରୁପା ପାଇଗଲେ ତମ୍ବାକୁ ପଚାରେ କିଏ ! ସିପାହି ବୀର ତମ୍ବାପଇସାତକ ତଳେ କୁଢ଼େଇଦେଇ ଥଳିରେ ରୁପାଟଙ୍କା ଝୁନ୍ଦି ଦେଲା । ତାପରେ କୁକୁରକୁ ତା ସିନ୍ଦୁକ ଉପରେ ବସାଇଦେଇ ତୃତୀୟ କୋଠରିକୁ ଚାଲିଗଲା ।

ତୃତୀୟ କୋଠରିରେ ବି ଏକ ବଡ଼ ସିନ୍ଦୁକ ଥାଏ । ସେଠାରେ ଜଗିଥାଏ ଏକ ବିରାଟ ବାଘ ପରି କୁକୁର । ତା ଆଖି ଦିଇଟା ସତରେ ପାହାଡ଼ ପରି ବଡ଼ ବଡ଼ ହୋଇଥାଏ ।

ହାତେ ଲମ୍ବର ଜିଭ ଲହଲହ କରୁଥାଏ । କିନ୍ତୁ ସିପାହି ବୀର ତାକୁ ଡରିଲା ନାହିଁ । ବୁଢ଼ୀର ଓଢ଼ଣୀଟି ତଳେ ପାରିଦେଲା ଓ ବାଘୁଆ କୁକୁରଟାକୁ ଖପ୍ କରି ଟେକିଆଣି ତା ଉପରେ ବସାଇଦେଲା । କୁକୁର ମେଞ୍ଚାଟିଏ ହୋଇ ବସିପଡ଼ିଲାରୁ ସିପାହି ଯାଇ ସିନ୍ଦୁକ ଖୋଲିଦେଲା । ଓଃ ! ସେ ଭିତରେ ଖାଲି ସୁନାମୋହରଗୁଡ଼ାକ ଝଲକୁଥାଏ । ସୁନା ଦେଖି ସିପାହି ରୁପାଟଙ୍କାଗୁଡ଼ାକ ତଳେ ଅଜାଡ଼ିଦେଲା । କାନ୍ଧର ଥଳି, ଜାମାର ମୁଣି, ଜୋତାର ଖୋପ— ଯେଉଁଠି ଯେତେ ଜାଗା ଥିଲା, ସବୁଥିରେ ସୁନାମୋହର ଭରି କରିଦେଲା । ତାପରେ ମନ ଖୁସିରେ ଆସି ବୁଢ଼ୀକୁ ଡାକ ପକାଇଲା, "ମାଉସୀ, ଏଥର ଦଉଡ଼ି ଟାଣ; ମୁଁ ଏ ଭିତରୁ ବାହାରେ ।"

ସିପାହି ଡାକ ଶୁଣି ବୁଢ଼ୀ ଦଉଡ଼ି ଟାଣିଲା । କିନ୍ତୁ ସିପାହି ଟିକିଏ ଉପରକୁ ଉଠିଛି କି ନାହିଁ ବୁଢ଼ୀ ପଚାରିଲା, "ଆରେ ପୁଅ, ମୋ ଆଣ୍ଠର ଝକମକିଟା ଆଣିଛୁ ଟି ?"

ସିପାହି ତ ସେ କଥା ଭୁଲି ଯାଇଥିଲା; ତେଣୁ ସେ ପୁଣି ଥରେ ତଳକୁ ଓହ୍ଲାଇ ଝକମକିଟି ନେଇ ଆସିଲା । ବିଚରା ବାହାରକୁ ଆସି ଝାଡ଼ିଝୁଡ଼ି ହେଉଛି, ବୁଢ଼ୀ କହିଲା, "କାହିଁ ମୋ ଝକମକିଟି ମତେ ଦେ ।"

ସିପାହି ପଚାରିଲା, "ଆଚ୍ଛା, ଏ ପୁରୁଣା ଝକମକିଟା ନେଇ ତୁ କଣ କରିବୁ ଶୁଣେ ?"

ବୁଢ଼ୀ କହିଲା, "ତୋର ସେଥିରେ କ'ଣ ଅଛି ଯେ ? ତୁ ତୋର ଟଙ୍କାସୁନା ପାଇଲୁ; ମତେ ମୋ ଚିଜ ଦେଇଦେ ।"

ସିପାହି ଭାବିଲା, ଏ ଭିତରେ ନିଶ୍ଚୟ କିଛି ଗୁମର ଅଛି । ତେଣୁ କହିଲା, "ଝକମକି ନେଇ କ'ଣ କରିବୁ କହିଦେ; ନାହିଁ ତ ମୋର ଏ ଖଣ୍ଡା ଦେଖୁଛୁଟି ? ଏକା

ଚୋଟକେ ସାବାଡ଼ କରିଦେବି ।''

ବୁଢ଼ୀ ରାଗିଯାଇ କହିଲା, ''ଆରେ, ଯାଆ ଯାଆ ! ମୁଁ ଏମିତି କେତେ ଖଣ୍ଡା ଦେଖିଛି । ତୁ କଣ ମତେ ଖଣ୍ଡା ଦେଖାଉଛୁ ? ମୁଁ କହିବି ନାହିଁ ।''

''ଏମନ୍ତ କଥା ? ତା' ହେଲେ ଦେଖ—'' କହି ସିପାହି ବୀର ଇମିତି ଖଣ୍ଡାଚୋଟ ଦେଲା ଯେ ଡାଆଣୀ ବୁଢ଼ୀର ମୁଣ୍ଡଗଣ୍ଡି ଦୁଇଗଡ଼ ହୋଇଗଲା । ଡାଆଣୀ ବୁଢ଼ୀକୁ ମାରି ସିପାହି ବୀର ତା ଓଢ଼ଣିରେ ସୁନାମୋହରତକ ବାନ୍ଧିଦେଲା । ତାପରେ ସେ ଗଣ୍ଠିଲିଟି କାନ୍ଧରେ ପକାଇ ମନଖୁସିରେ ସହରକୁ ଚାଲିଗଲା ।

ସେଇଟି ଗୋଟିଏ ବଡ଼ ସହର । ସେଠାରେ ରାଜାଙ୍କ ଗଡ଼ ଥାଏ। ଦେଶଯାକର ବଡ଼ଲୋକ ସେଠାରେ ଘର କରିଥାନ୍ତି । ସିପାହି ବୀର ଯାଇ ସେଠାକାର ଗୋଟିଏ ବଡ଼ ହୋଟେଲରେ ରହିଗଲା । ହୋଟେଲରେ ଗୋଟିଏ ବଢ଼ିଆ କୋଠରି ଭଡ଼ା ନେଇ ବେହେରାକୁ କହିଲା, ''ଯାହାସବୁ ଭଲ ଭଲ ଦରବ ରନ୍ଧା ହୋଇଛି, ମୋ ପାଖରେ ଆଣି ବାଢ଼ି ଦିଅ ।''

ସେହିଦିନଠାରୁ ସେ ହୋଟେଲରେ ରହି ରଜାଖିଆ ଖାନା ଖାଇଲା । ଗଣ୍ଡା ଗଣ୍ଡା ଚାକର ଆସି ତା ତଳେ ଖଟିଲେ । ସେ ନିଜ ପାଇଁ ଭଲ ଭଲ ପୋଷାକ କରି ପକାଇଲା । ଦିନ କେତେଟା ଭିତରେ ସେ ସେଠାର ଜଣେ ନାମଜାଦା ଲୋକ ହୋଇଗଲା । ଗୁଡ଼ ପାଖରେ ପିମ୍ପୁଡ଼ି ଯୁଟିଲା ପରି ପଣପ ଲୋକ ଆସି ତାର ସାଙ୍ଗ ହୋଇଗଲେ । ତା ପାଖରେ ଟଙ୍କାସୁନାର ଅଭାବ ନ ଥାଏ। ସାଙ୍ଗମାନଙ୍କୁ ଖୁଆଇ ପିଆଇ ଧନ ଖର୍ଚ୍ଚ କଲା ।

ଦିନକର କଥା । ଖୁସୀଗପ କରୁ କରୁ ତାର ଜଣେ ସାଙ୍ଗ କହିଲା, "ଆମ ଦେଶ ରଜାଙ୍କ ଝିଅ ପରି ସୁନ୍ଦରୀ ଝିଅ ଆଉ ନ ଥିବେ । କିନ୍ତୁ ତା ପାଇଁ ରାଜାଙ୍କର ମନ ଭାରି ଖରାପ ।"

ସିପାହି ପଚାରିଲା,"କାହିଁକି ?"

-"ଜ୍ୟୋତିଷମାନେ କହିଛନ୍ତି ଯେ, ରଜାଝିଅ କାଳେ ଜଣେ ସାଧାରଣ ସିପାହିକୁ ବାହା ହେବ । ରାଜା କଣ ଏ କଥା ସହିପାରିବେ ? ସେଇଥିପାଇଁ ତାଙ୍କ ମନ ଖରାପ ।"

ଏହା ଶୁଣି ସିପାହି ପଚାରିଲା, "ଆମେ ଯାଇ ତାଙ୍କୁ ଟିକିଏ ଦେଖନ୍ତେ ନାହିଁ ?"

ସାଙ୍ଗ କହିଲା, "ବାପରେ ବାପ୍ ! ଆମେ କିଏ, ରଜାଝିଅ କିଏ ! ରଜା ତାକୁ ନେଇ କେଉଁଠି ରଖିଛନ୍ତି ଜାଣିଛ ? -ନେଇ ଗୋଟିଏ ଦୁର୍ଗ ଭିତରେ ଲୁଚାଇ ରଖିଛନ୍ତି । ସେଠାରେ ସାତ ପରସ୍ତ ପାଚରି; କଂସାର କବାଟ; ରଜାଙ୍କ ଛଡ଼ା ଅନ୍ୟ ପୁରୁଷଙ୍କୁ ସେଠାରେ ପଶିବା ମନା ।"

ସେହିଦିନଠାରୁ ସିପାହି ବୀର ମନ ହେଲା ସେ କିମିତି ରଜାଝିଅକୁ ଥରେ ଦେଖନ୍ତା । ସେପଟେ ଖର୍ଚ୍ଚର ସୀମା ନ ଥାଏ । ବସି ଖାଇଲେ ନଈବାଲି ସରେ । ଖର୍ଚ୍ଚ କରୁ କରୁ ତାର ସବୁ ଧନ ସରିଗଲା । ଯାହା ଦି ପଇସା ରହିଥାଏ ସେତକ ଧରି ସେ ହୋଟେଲ ଛାଡ଼ି ଯାଇ ଗୋଟିଏ ଟୁଙ୍ଗି ଘରେ ରହିଲା । ଗୁଡ଼ ସରିଗଲେ ପିମ୍ପୁଡ଼ି ପଳାନ୍ତି । ତାର ଧନ ସରିଗଲାରୁ ତା ସାଙ୍ଗ ସୁଖ ମଧ ଆଉ ପାଖ ମାଡ଼ିଲେ ନାହିଁ । ଶେଷକୁ ଦିନେ ସନ୍ଧ୍ୟାବେଳକୁ ସେ ଦେଖେ ତ ମହମବତି କିଣିବାକୁ ବି ପାଖରେ ଦିପଇସା ନାହିଁ । ଅନ୍ଧାର ରାତି । ବିଛଣା ପାରିବାକୁ ଦରାଣ୍ଡି ହେଉଛି, ଏତିକିବେଳେ ଡାଆଣୀ ବୁଢ଼ୀର ସେହି ଝକମକିଟି କଥା ତାର ମନେ ପଡ଼ିଗଲା ।

ସେହିଦିନୁ ସେ ଚିଜଟି ତା ମୁଣିରେ ପଡ଼ିଥାଏ । ଝକମକିକୁ ଖଣ୍ଡିଏ ଇସ୍ପାତରେ ବାଡ଼େଇଦେଲେ ସେଥିରୁ ନିଆଁଝୁଲ ବାହାରେ । ଟିକିଏ ଆଲୁଅ ଦେଖିବାକୁ ସିପାହି ବୀର ତା ମୁଣିରୁ ଝକମକିଟି ବାହାର କଲା । ସେଥିରେ ତ ଖଣ୍ଡିଏ ଇସ୍ପାତ ବନ୍ଧା ହୋଇଥାଏ । ସେଥିରେ ସେ ଝକମକି ପଥରଟାକୁ ଥରଟିଏ ବାଡ଼େଇଦେଲା ।

ଝକମକିରୁ ନିଆଁଝୁଲ ଟିକିଏ ବାହାରିଛି କି ନାହିଁ, ତା ଟୁଙ୍ଗି-ଦୁଆରଟା ଧଡ଼୍.କରି ଖୋଲିଗଲା । କଥା କ'ଣ ବୋଲି ସେ ଚାହିଁଦିଏ ତ, ଗୋଟିଏ ଡାହାଲ କୁକୁର ଆସି କହିଲା, ''ହଜୁର, ହୁକୁମ କରନ୍ତୁ । ମତେ ଯାହା କହିବେ ମୁଁ ତାହା ଆଣିଦେବି ।''

ତାକୁ ଦେଖୁ ଦେଖୁ ସିପାହି ଚିହ୍ନିଗଲା; ସେହି କୁକୁର ଗଛ କୋରଡ଼ତଳ କୋଠରିରେ ତମ୍ବାପଇସା ଥିବା ସିନ୍ଦୁକ ଜଗିଥିଲା । ସିପାହି ପଚାରିଲା,''କିରେ, ତୁ !! ତୁ କିପରି ଆସିଲୁ ?

କୁକୁର କହିଲା, ''ଆମେ ପରା ଏ ଝକମକିର ଗୋଲାମ । ଏ ଚିଜଟି ଯେ ଧରିଥିବ, ଆମେ ତାର ହୁକୁମ ମାନିବୁ ।''

ସିପାହି ବୀର ଝକମକିର କରାମତି ଜାଣିଗଲା । ସେ ଜାଣିଗଲା ଯେ, ଡାଆଣୀ ବୁଢ଼ୀ ଏଇଥିପାଇଁ ଝକମକିଟା ପାଇବାକୁ ଅଡ଼ି ବସିଥିଲା । କୁକୁର କଥା ସତ କି ମିଛ ପରଖିବାକୁ ସେ କହିଲା, ''ଆରେ, ମୋ ପାଇଁ କିଛି ପଇସାପତ୍ର ଆଣିଦେଲୁ ।''

ସଙ୍ଗେ ସଙ୍ଗେ କୁକୁର ଯାଇ ଥଳିରେ ଥଳିଏ ତମ୍ବାପଇସା ଆଣିଦେଲା । ସିପାହି ଏଥର ସବୁ ଗୁମର ଜାଣିଗଲା । ସେ ମନଖୁସିରେ ଝକମକିକୁ ଇସ୍ପାତରେ ଦି'ଥର

ବାଡ଼େଇଦେଲା । ଏଥର ରୁପାଟଙ୍କା-ସିନ୍ଦୁକ ଜଗିଥିବା କୁକୁର ଚାଲିଆସିଲା । ସିପାହି **କହୁ କହୁ** ସେ ତା ପାଖକୁ ଥଳିଏ **ରୁପାଟଙ୍କା** ଆଣିଦେଲା । ଏଥର ସିପାହି ପଚାରିଲା,"ଆରେ, ସୁନାମୋହର ଜଗିଥିବା ବାଘୁଆ କୁକୁରଟା କିପରି ଆସିବ ?" କୁକୁର କହିଲା, "ହଜୁର, କୁହୁକ ଝକମକିକୁ ଇସ୍ପାତରେ ତିନିଥର ବାଡ଼େଇ ଦିଅନ୍ତୁ ।" ସିପାହି ସେଇଆ କଲା । ସଙ୍ଗେ ସଙ୍ଗେ ବାଘୁଆ କୁକୁର ଆସି ହାଜର । ସେ ଯାଇ ସୁନାମୋହରରୁ ଥଳିଏ ଆଣିଦେଲା । ସିପାହି ହାତରେ ପୁଣି ଧନ ପଡ଼ିଗଲା । ତା ପରଦିନ ସକାଳୁ ସକାଳୁ ସେ ପୁଣିଥରେ ସେହି ହୋଟେଲକୁ ଚାଲିଗଲା । ପୁଣିଥରେ ରଜାଙ୍କ ପରି ଜୀବନ କାଟିଲା । ପୁଣିଥରେ ତା' ପାଖରେ ସାଙ୍ଗ ସୁଖ ଯୁଟିଗଲେ ।

ସେଦିନ ରାତି କଥା । ସିପାହି ବୀର କହିଲା, "ଏଥର କ'ଣ ରଜାଝିଅଟାକୁ ଦେଖିପାରିବିନି ? କାହିଁରେ ମୋ ଝକମକି... !" ଏହା କହି ସେ କୁହୁକ ଝକମକିରେ ଇସ୍ପାତ ଖଣ୍ଡଟାକୁ ବାଡ଼େଇଦେଲା । ସଙ୍ଗେ ସଙ୍ଗେ ପ୍ରଥମ କୁକୁର ଆସି ହାଜର । ସିପାହି ବୀର ତାକୁ କହିଲା, "ମୁଁ ଏ ଦେଶର ରଜାଝିଅକୁ ଦେଖିବାକୁ ଚାହେଁ; ଶୀଘ୍ର ଯାଇ ତାକୁ ଏଠାକୁ ନେଇଆସ ।"

କୁକୁର ଏକା ରାହାକେ ଦୌଡ଼ିଗଲା । ଆଉ ରାହାକେ ରଜାଝିଅକୁ ପିଠିରେ ବସାଇ ନେଇଆସିଲା । ସେତେବେଳକୁ ରାତି ଅଧ; ରଜାଝିଅ ନିଦରେ ଘାରି ହେଉଥାଏ । କିନ୍ତୁ ସତରେ ସେ **ଭାରି ସୁନ୍ଦର** ଦେଖା ଯାଉଥାଏ । -ଏତେ ସୁନ୍ଦର ଯେ ତାକୁ ଦେଖୁ ଦେଖୁ ବୀର ସିପାହି ଗୋଟିଏ ଚୁମା ଦେଇଦେଲା । ରଜାଝିଅର ନିଦ ଭାଙ୍ଗିଗଲା । ସେ ସିପାହିକୁ ଦେଖି ଚାହିଁ ରହିଲା । ତାକୁ ସ୍ୱପ୍ନ ପରି ଲାଗିଲା । ରାତି ସରି ଆସୁଥାଏ । ତେଣୁ ସିପାହି ତା' କୁକୁରକୁ କହିଲା,

"ଯା, ଏଥର ୟାଙ୍କୁ ତାଙ୍କ ଦୁର୍ଗକୁ ନେଇ ଶୁଆଇ ଦେ ।" କୁକୁର ରଜାଝିଅକୁ ଦୁର୍ଗକୁ ନେଇଗଲା । ସେଠାରେ ତା ପଲଙ୍କରେ ଶୁଆଇଦେଇ ଆସିଲା ।

ତା'ପରଦିନ ସକାଳ କଥା । ରଜାରାଣୀ ଆସି ଝିଅ ସାଥିରେ ବସି ଜଳଖିଆ ଖାଉଛନ୍ତି, ଝିଅ କହିଲା, "ବାପା, କାଲି ରାତିରେ ମୁଁ ଗୋଟିଏ ସୁନ୍ଦର ସ୍ୱପ୍ନ ଦେଖିଲି ।"

ରଜା ପଚାରିଲେ, "କି ସ୍ୱପ୍ନ ଲୋ ମାଆ ?"

ଝିଅ କହିଲା,"ଦେଖିଲି ଗୋଟିଏ କୁକୁର ଆସି ମତେ ପିଠିରେ ବସାଇ କୁଆଡ଼େ ନେଇଗଲା । ମୁଁ ଶୋଇଥାଏ । ସେ ମତେ ନେଇ ଜଣେ ବୀର ସିପାହି ପାଖରେ ବସାଇ ଦେଲା । ସିପାହି ମୋ ରୂପରେ ମୋହିତ ହୋଇ ମତେ ଗୋଟିଏ ଚୁମା ଦେଇଦେଲା ।"

ଏକଥା ଶୁଣି ରାଜା ଚମକି ଉଠିଲେ । ରାଣୀ କହିଲେ, "ଏଇଟା ସ୍ୱପ୍ନ ନା ସତ !" ରଜାଝିଅ କହିଲା, "ସ୍ୱପ୍ନ ହେଲେ ବି ସତ ପରି ଲାଗୁଛି । ବୀର ସିପାହିଟି ଭାରି ସୁନ୍ଦର । କିଛି ସମୟ ପରେ ସେ କୁକୁର ମତେ ଏଠିକି ନେଇ ଆସିଲା ।"

ରାଣୀ କହିଲେ, "ରଖିଥା, ରଖିଥା । ଏଇଟା ସ୍ୱପ୍ନ କି ସତ, ଆଗ ସେକଥା ପରଖିବାକୁ ପଡ଼ିବ ।" ଏହା କହି ସେ ଝିଅ ପାଖରେ ଜଣେ ପୁରୁଖା ଦାସୀକୁ ଜଗାଇଦେଲେ । ଦାସୀ ରଜାଝିଅକୁ ଦିନ ରାତି ଜଗି ବସିଲା । ସେପଟେ ସେଦିନ ରାତିରେ ବି ରଜାଝିଅକୁ ଦେଖିବାକୁ ସିପାହି ବୀରର ମନ ହେଲା । ତେଣୁ ସେ ପୁଣି ଥରେ କୁହୁକ ଝକମକି ବଳରେ କୁକୁରକୁ ଡକାଇଲା । ଦାସୀ ଜଗିଛି, କୁକୁର ଯାଇ ରଜାଝିଅର ପଲଙ୍କ ପାଖରେ ପହଞ୍ଚିଗଲା । ଦାସୀଟା ହାଁ,ହାଁ

କରୁଥାଏ, କୁକୁର ରଜାଝିଅକୁ ପିଠିରେ ପକାଇ ଆଖିପିଛୁଳାକେ ଦୌଡ଼ି ପଳାଇ ଆସିଲା । କିନ୍ତୁ ଦାସୀ ନ ଛାଡ଼େ । ସେ ବି କୁକୁର ପଛରେ ଦୌଡ଼ିଲା । ଦୌଡୁ ଦୌଡୁ ଦେଖିଲା ଯେ, କୁକୁରଟା ରଜାଝିଅକୁ ନେଇ ଗୋଟିଏ ହୋଟେଲ ଘରେ ପଶିଗଲା । ଅନ୍ଧାର ରାତି । ହୋଟେଲର ନାଆଁ ଗାଆଁ ପଢ଼ିହେଲାନି । ତଥାପି ଦାସୀ କହିଲା, ''ରହ ରହରେ ଚୋର, ରାତିରେ ସିନା ଖସିଗଲୁ, ସକାଳେ କୁଆଡ଼େ ଯିବୁ ଦେଖିବି ।''

ଏହା କହି ସେ ହୋଟେଲ କବାଟରେ ଖଡ଼ିରେ ଗୋଟିଏ ଛକି ଚିହ୍ନ କରିଦେଲା । ଭାବିଲା, ସକାଳ ହେଲେ ଛକି ଚିହ୍ନ ଦେଖି ଘରଟାକୁ ଠାବ କରିଦେବି; ଚୋର ଧରାପଡ଼ିଯିବ । କିନ୍ତୁ ନିଜ କାମ ସାରି ଫେରିଲା ବେଳକୁ କୁହୁକ କୁକୁର ଦେଖିଲା ଯେ ହୋଟେଲ କବାଟରେ ଗୋଟିଏ ଛକି ଚିହ୍ନ ବସିଛି । ସେ ଭାବିଲା ଏଥିରେ କିଛି ବିପଦ ଅଛି । ତେଣୁ ସେ ବି ଖଣ୍ଡିଏ ଖଡ଼ି ଧରି ବାହାରି ପଡ଼ିଲା । ଖଡ଼ି ଧରି ସହରର ସବୁ କବାଟରେ ଠିକ୍ ସେହିପରି ଛକି ଚିହ୍ନ ଆଙ୍କି ଦେଇଗଲା । ଦାସୀ ସେତକ ଦେଖିପାରି ନ ଥାଏ ।

ସକାଳ କଥା । ଦାସୀ ଯାଇ ରଜାରାଣୀଙ୍କୁ ସବୁକଥା କହିଦେଲା । ରଜାରାଣୀ ପାଇକ ରାଉତ ନେଇ ଚୋର ଧରିବାକୁ ବାହାରିପଡ଼ିଲେ । କିନ୍ତୁ ସହର ଭିତରେ ପଶୁ ପଶୁ ସେମାନେ ଭେଳିକିରେ ପଡ଼ିଗଲେ । ସହରର ସବୁ କବାଟରେ ତ ଛକିଚିହ୍ନ ବସିଥାଏ; ଚୋର କେଉଁଠି ଅଛି ଜାଣନ୍ତେ କିପରି ? ଛି ଛିକାର ହୋଇ ସେମାନେ ଦାସୀକୁ ବୁହେ ନିନ୍ଦିଲେ । ତାପରେ କାନମୁଣ୍ଡା ଆଉଁଶି ଫେରିଗଲେ ।

କିନ୍ତୁ ରାଣୀ ଭାରି ଚତୁରୀ । ଚୋର ଧରିବାକୁ ସେ ଆଉ ଗୋଟିଏ ଉପାୟ କଲେ । ସେ ଗୋଟିଏ କନାର ମୁଣି କରି ସେଥିରେ ମୁରୁଜଗୁଣ୍ଡ ଭର୍ତ୍ତି କରିଦେଲେ । ସେହି

ମୁଣିଟିକୁ ଝିଅ ଅଣ୍ଟାରେ ବାନ୍ଧିଦେଲେ । ମୁଣି ତଳେ ଗୋଟିଏ କଣା କରିଦେଇଥାନ୍ତି । ଝିଅ ଟିକିଏ ହଲଚଲ ହେଲେ ମୁଣିରୁ ମୁରୁଜଗୁଣ୍ଡ ଗଳି ପଡୁଥାଏ । ଏତିକି କରିଦେଇ ସେ ତା'ପରଦିନ ସକାଳ ଯାଏଁ ଅପେକ୍ଷା କରି ରହିଲେ ।

ସେଦିନ ରାତିରେ ବି ସିପାହି ବୀରର ମନ ହେଲା, ସେ ଟିକିଏ ଆଉ ଥରେ ରଜାଝିଅକୁ ଦେଖନ୍ତା । ତେଣୁ ରଜାଝିଅକୁ ଆଣ ବୋଲି ସେ ତା କୁହୁକ-କୁକୁର ପଠାଇଦେଲା । କୁକୁର ଯାଇ ରଜାଝିଅକୁ ନେଇ ଆସିଲା । କିଛି ସମୟ ପରେ ତାକୁ ନେଇ ତା ଦୁର୍ଗରେ ଛାଡ଼ିଦେଇ ଆସିଲା । ଏହି ନିଆଆଣ ଭିତରେ ମୁରୁଜ ମୁଣିରୁ ମୁରୁଜଗୁଣ୍ଡ ବୁଣି ହୋଇ ଚାଲିଥାଏ । ଫଳରେ ସେଦିନ ରାତିରେ ଦୁର୍ଗରୁ ହୋଟେଲ ଓ ହୋଟେଲରୁ ଦୁର୍ଗକୁ ଦୁଇଧାର ମୁରୁଜ ବୁଣିହୋଇ ପଡ଼ିଗଲା । ଅନ୍ଧାର ରାତି; କୁକୁର ବିଚରା ମୁରୁଜ ଧାର ଦେଖିପାରିଲା ନାହିଁ । କାମ ସାରିଦେଇ ସେ ତାର ପଳାଇଗଲା । ରାତି ପାହି ସକାଳ ହେଉ ହେଉ ରାଣୀଙ୍କ ଆଖିରେ ସେହି ଦୁଇଧାର ମୁରୁଜ ପଡ଼ିଗଲା । ସେ କି ଆଉ ଛାଡ଼ନ୍ତି । ପାଇକ ରାଉତ ଧରି ସେ ଆସି ସିପାହି ପାଖରେ ପହଞ୍ଚିଗଲେ । ସିପାହି ବୀର ଧରା ପଡ଼ିଗଲା । ରାଜାଙ୍କ ଲୋକେ ତାକୁ ନେଇ ଜେଲଖାନାରେ ଠୁଙ୍କି ଦେଲେ; ତା ଜିନିଷପତ୍ର ସବୁ ହୋଟେଲରେ ରହିଗଲା ।

ବିଚରା ଜେଲଖାନାର ଅନ୍ଧାରୁଆ କୋଠରିରେ ପଡ଼ିଥାଏ । ଦିନେ ସକାଳେ ଜଗୁଆଳ ଆସି ତାକୁ କହିଦେଇ ଗଲା, "ଆରେ, ଆଜି ତତେ ଫାଶି ଦିଆଯିବ ।" ସିପାହି ବୀର ଚିନ୍ତାରେ ପଡ଼ିଗଲା । ଭାବିଲା, "ଏତିକିବେଳେ ହେଲେ ପାଖରେ କୁହୁକ ଝକମକିଟା ଥାଆନ୍ତା !" କାରଣ ଝକମକିଟାକୁ ସେ ତା ହୋଟେଲର ଝରକା ଧାରରେ ଛାଡ଼ିଦେଇ ଆସିଥିଲା ।

ବିଚରା ଭିତରେ ବସି ଏପରି—ଭାବୁଥାଏ, ସେପଟେ ଫାଶି ଦେଖିବାକୁ ଦଳଦଳ ଲୋକ ଫାଶିପଡ଼ିଆକୁ ଚାଲିଥାନ୍ତି । ସଡ଼କର ବଡ଼ ଗହଳ ଚହଳ ଶୁଭୁଥାଏ । ଲୋକଙ୍କୁ ଦେଖିବାକୁ ସେ ଜେଲଖାନା ଝରକାବାଟେ ବାହାରକୁ ଚାହିଁରହିଲା । ଦେଖିଲା ସବୁ ଲୋକ ଫାଶିପଡ଼ିଆକୁ ଚାଲିଗଲେଣି, କିନ୍ତୁ ପଛରେ ଗୋଟିଏ ମୋଚି ଟୋକା ଦୌଡୁଛି । ଦୌଡୁ ଦୌଡୁ ତା ପାଦରୁ ପଟେ ଚପଲ ଛିଟିକି ଗଲା ଯେ ସେଇଟା ଆସି ଜେଲଖାନା ଝରକା ପାଖରେ ପଡ଼ିଲା । ତେଣୁ ମୋଚିଟୋକା ତା ଚପଲ ନେବାକୁ ଝରକା ପାଖକୁ ଦୌଡ଼ି ଆସିଲା ।

କିଛି ନ ଜାଣିଲା ପରି ହୋଇ ସିପାହି ବୀର ତାକୁ ପଚାରିଲା, "କିରେ, ଇମିତି କାହିଁକି ଦୌଡୁଛୁ ?"

ମୋଚି ଟୋକା କହିଲା, "ତମେ ଜାଣିନା କି ? ରଜାଝିଅକୁ ଜଣେ ଲୋକ ଚୋରାଇ ନେଉଥିଲା । ସେ ଧରା ପଡ଼ିଛି । ଆଜି ପରା ତାକୁ ଫାଶି ଦିଆଯିବ । ଫାଶି ଦେଖିବାକୁ କେତେ ଲୋକ ଯାଉଛନ୍ତି ଦେଖୁନା ?"

ସିପାହି ବୀର କହିଲା, "ଆରେ, କେତେ ଲୋକ ଗଲେ କଣ ହେବ ? ମୁଁ ନ ଗଲା ଯାଏଁ ଫାଶି ହେଉନି । ଇମିତି ମାଗଣାରେ ଦୌଡ଼ନା । ଯଦି ମୋ କାମରେ ଦୌଡ଼ିବୁ ମୁଁ ତତେ ପାଞ୍ଚ ଟଙ୍କା ଦେବି ।"

ମୋଚି ଟୋକା ତ ଦିନସାରା ଖଟିଲେ ଯୋଡ଼େ ଟଙ୍କା ପାଏନି । ପାଞ୍ଚ ଟଙ୍କା ମିଳିବ ଶୁଣି ତାର ଲୋଭ ହେଲା । ପଚାରିଲା, "ତମର କି କାମ କରିଦେବି କହିଲ ?" ସିପାହି ବୀର ତାର ହୋଟେଲ ଠିକଣା ଦେଇ କହିଲା, "ସେଠାରେ ମୋ କୋଠରି ଝରକା ଧାରରେ ମୁଁ ଝକମକିଟି ଛାଡ଼ି ଦେଇଛି । ଦୌଡ଼ିଯାଇ ସେଇଟି ମୋ ପାଖକୁ ଆଣିଦେ ।"

ମୋଚି ଟୋକା ଦୌଡ଼ି ଯାଇ ଝକମକିଟି ଆଣି ଦେଲା । ଏଥର ସିପାହି ବୀରର ଖୁସି ଦେଖେ କିଏ !!

ସେପଟେ ଫାଶି ପଡ଼ିଆରେ ଲୋକେ ଭିଡ଼ ଜମାଇଥାନ୍ତି । ଫାଶିମଞ୍ଚରେ ଫାଶିକାଠ ପୋତା ଯାଇଥାଏ । ପଡ଼ିଆରେ ଗୋଟିଏ ପାଖରେ ରଜାରାଣୀ ବସିଥାନ୍ତି । ପାଖରେ ପାତ୍ର, ମନ୍ତ୍ରୀ, କଟୁଆଳ ଓ ବିଚାରପତିମାନେ ବସିଥାନ୍ତି । ଆରପାଖରେ ଦେଖଣାହାରି ଠିଆ ହୋଇଥାନ୍ତି । ଜଗୁଆଳମାନେ ସିପାହି ବୀରକୁ ଆଣି ଫାଶିମଞ୍ଚ ପାଖରେ ଠିଆ କରାଇ ଦେଲେ । ତା'ବେକରେ ଫାଶି ଦଉଡ଼ି ବନ୍ଧା ଯାଉ ଯାଉ ସେ ହାତ ଯୋଡ଼ି ରଜାଙ୍କୁ ଜଣାଇଲା, ''ମଣିମା, ମରିବା ଆଗରୁ ମୋର ଗୋଟିଏ ମାଗୁଣି ଅଛି ।''

ରାଜା ପଚାରିଲେ, ''କି ମାଗୁଣି ??''

ସିପାହି କହିଲା, ''ମଣିମା, ମୁଁ ଖଣ୍ଡିଏ ପିକା ଟାଣନ୍ତି । ଛାମୁ ଏହିତକ ମନା କରନ୍ତୁନି ''

ଏପରି ଛାର କଥାଟାକୁ ରଜା ବା କାହିଁକି ମନା କରନ୍ତେ ? ସେ କହିଲେ, ''ପିକାଟିଏ ଟାଣିବୁ ତ ଟାଣ ।'' ତେଣୁ ପିକାରେ ନିଆଁ ଲଗାଇବାକୁ ସିପାହି ବୀର ତା ଜାମାମୁଣିରୁ ଝକମକି ପଥରଟି ବାହାର କରିଦେଲା । ଏଥର ଦେଖ ମଜା ! ସେ ଇସ୍ପାତ ଖଣ୍ଡଟିକୁ ଝକମକି ପଥରରେ ଏକ, ଦୁଇ, ତିନି କରି ତିନିଥର ମାରିଦେଇଛି କି ନାହିଁ, ତିନି କୁହୁକ-କୁକୁର ଆସି ତା ଆଗରେ ଠିଆ ହୋଇଗଲେ । ସେମାନେ ଏକା ସାଥିରେ ପଚାରିଲେ, ''ହଜୁର, କି କାମ କରିବୁ ହୁକୁମ ଦିଅନ୍ତୁ ।''

ସିପାହି ବୀର କହିଲା, ''ମତେ ଏ ମରଣମୁହଁରୁ ରକ୍ଷାକର ।''

କୁକୁରମାନେ କି ଆଉ ସମ୍ଭାଳ ଧରନ୍ତି ? ତିନିଟାଯାକ କୁକୁର ଜଗୁଆଳ ଓ ପାତ୍ରମନ୍ତ୍ରୀଙ୍କ ଉପରକୁ ସିଂହ ପରି ଡେଇଁ ପଡ଼ିଲେ । ସେମାନଙ୍କୁ କାମୁଡ଼ି-ରାମ୍ପୁଡ଼ି ଧରି ଇମିତି ଛାଟିଦେଲେ ଯେ, କିଏ ଯାଇ ପାଏ ଦୂରରେ ପଡ଼ିଲା ତ କିଏ କୋଶେ ଦୂରରେ । ବିଚାରପତିମାନେ ପ୍ରାଣ ନେଇ ଦୌଡ଼ି ପଳାଇଲେ । ଦେଖଣାହାରିଏ ଓ ରଜାରାଣୀ ଜୀବନ ବିକଳରେ ପାଟି କଲେ, "କ୍ଷମା କର, କ୍ଷମା କର । ହେ ସିପାହି ବୀର, ତୁମେ ଯାହା ମାଗିବ ଆମେ ତାହା ଦେବୁ । ଆମକୁ କ୍ଷମା କର ।"

ସିପାହି ବୀର କୁକୁରଙ୍କୁ ବୋଧ ଶୋଧ କରି ପାଖକୁ ଡାକି ଆଣିଲା । ତାପରେ ରାଜାଙ୍କୁ କହିଲା, "ମଣିମା, ମୁଁ ବେଶି କିଛି ମାଗୁନି । କେବଳ ମୁଁ ଛାମୁଙ୍କ ଝିଅକୁ ବାହା ହେବାକୁ ଚାହେ ।"

ରଜା ଏଥର ରାଜି ହୋଇଗଲେ । ତାଙ୍କର ତ ପୁଅ ନ ଥାନ୍ତି; ସେହି ଗୋଟିଏ ବୋଲି ଝିଅ । ତେଣୁ ସେ ସିପାହି ବୀରକୁ ଘରଜ୍ୱାଇଁ କରିନେଲେ । ବଡ଼ **ଧୁମ୍‌ଧାମରେ** ବାହାଘର ହୋଇଗଲା । ସେ ଯୁବରାଜ ହୋଇଗଲା । ଆଉ ତୁମକୁ ମିଛ, ମତେ ସତ, **କୁହୁକ** ଝକମକି ବଳରେ ସେ ବଡ଼ ଭଲରେ ରାଜୁତି କଲା । ନିଜ ସାହସ ଓ ବୀରତ୍ୱ ବଳରେ ସେ ସାଧାରଣ ସିପାହିରୁ ରାଜ୍ୟର ରଜା ହୋଇଗଲା । ସତରେ 'ବୀରଭୋଗ୍ୟା ବସୁନ୍ଧରା ।'

•

# ରଜାଙ୍କ ନୂଆ ଲୁଗା

ଜଣେ ରଜା ଥାଆନ୍ତି ଯେ ନୂଆ ଲୁଗା ପିନ୍ଧିବାରେ ତାଙ୍କର ଭାରି ସଉକ । ଖେଳକୁଦ, ନାଚଗୀତ ବା ପ୍ରଜାପାଳନରେ ତାଙ୍କର ମନ ନ ଥାଏ । ନୂଆ ଲୁଗାକୁ ହିଁ ସେ ବେଶି ପସନ୍ଦ କରୁଥାନ୍ତି । ନୂଆ ଲୁଗା ପିନ୍ଧିଲେ ସେ ଧୁମଧାମରେ ପଟୁଆର କରି ସହର ବୁଲନ୍ତି । ତାଙ୍କର ହଜାର ହଜାର ଲୁଗା ଥାଏ । ସେ ଘଣ୍ଟାକୁ ଘଣ୍ଟା ଲୁଗା ବଦଳାଉଥାନ୍ତି । ଇମିତିରେ ଦିନ କଟୁଥାଏ; ତଥାପି ସେ ନିଜକୁ ବଡ଼ ଜାଣିବାର ଲୋକ ବୋଲି ଭାବୁଥାନ୍ତି ।

ଦିନକର କଥା । ସେହି ଲୁଗାରସିକ-ରଜାଙ୍କ ଦରବାରରେ ଦିଜଣ ଠକ ଆସି ପହଞ୍ଚିଗଲେ । ସେମାନେ ରାଜାଙ୍କୁ କହିଲେ, "ମଣିମା, ଆମେ ତନ୍ତୀଘର ପୁଅ । ବହୁ ବୁଦ୍ଧି ଖଟାଇ ଖଟାଇ ଆମେ ଗୋଟିଏ ନୂଆ ପ୍ରକାର ଲୁଗା ବୁଣିବା ଶିଖିଛୁ । ମଣିମା ତ ଲୁଗାର ମୂଲ୍ୟ ଜାଣନ୍ତି । ଯଦି ବରାଦ କରନ୍ତେ, ଆମେ ସେହି ନୂଆ ଲୁଗା ବୁଣି ଦିଅନ୍ତୁ ।"

ନୂଆ ପ୍ରକାର ଲୁଗା କଥା ଶୁଣି ରଜା ଖୁସୀ ହୋଇଗଲେ । ପଚାରିଲେ, "ଆଚ୍ଛା, ସେ ଲୁଗା ବିଷୟରେ ଆମକୁ ଟିକିଏ କହ । ସେଥିରେ କି ନୂଆ କଥା ଅଛି ଜାଣିଲେ ବରାଦ କରିବା ।"

ଦୁଇଠକଙ୍କ ଭିତରୁ ବଡ଼ଠକ କହିଲା, "ସେ ଲୁଗା ଅଯୋଗ୍ୟ ଲୋକଙ୍କ ଆଖିକୁ ଦେଖାଯିବ ନାହିଁ । ମଣିମା

ସେ ଲୁଗା ପିନ୍ଧିଲେ ଯୋଗ୍ୟ କିଏ ଅଯୋଗ୍ୟ କିଏ ସହଜରେ ଜାଣିଯିବେ ।''

ଏହା ଶୁଣି ସମସ୍ତେ ଆଶ୍ଚର୍ଯ୍ୟ ହୋଇଗଲେ । ରଜା ଭାବିଲେ, ''ଆରେ ବାଃ ! ଏପରି ଲୁଗା ତ ବଢ଼ିଆ କାମ ଦେବ । ଏପରି ଲୁଗା ପିନ୍ଧିଲେ ମତେ ଆଉ ଲୋକ ଚିହ୍ନିବାକୁ ବେଳ ଲାଗିବ ନାହିଁ ।'' ଏହା ଭାବି ଭାବି ସେ ଠକମାନଙ୍କୁ କହିଲେ, ''ତା'ହେଲେ ଆମ ପାଇଁ ସେଥିରୁ ସାରେ ଲୁଗା ବୁଣିଦିଅ । ସେଥିରୁ କିଛି କନା ମଧ୍ୟ ବୁଣିଦେବ ଯେ ଆମର ପୋଷାକ ପତ୍ର ହୋଇଯିବ ।''

ଠକଦିହେଁ ମନେ ମନେ ଖୁସୀ ହୋଇଗଲେ । ସାନ-ଠକ କହିଲା, ''ମଣିମା, ଲୁଗା ବୁଣିବାକୁ ଭଲ ରେଶମ ସୂତା ଓ ସୁନାଜରି ଦରକାର । କିଛି ମଣିମୁକ୍ତା ମଧ୍ୟ ଲାଗିବ । ଏସବୁ ମିଳିଗଲେ ଆମେ କାମ ଆରମ୍ଭ କରିଦେବୁ ।''

ରଜା ସଙ୍ଗେ ସଙ୍ଗେ ଗନ୍ତା-ଘରିଆକୁ ଡକାଇଲେ । ତନ୍ତୀକାରିଗରଙ୍କୁ ସବୁ ଦରକାରୀ ଜିନିଷ ଯୋଗାଇ ଦେବାକୁ ହୁକୁମ କରିଦେଲେ । ସେମାନଙ୍କର ଖର୍ଚ୍ଚ ପାଇଁ କିଛି ଟଙ୍କାପଇସା ମଧ୍ୟ ଧରାଇଦେଲେ । ଦୁଇଠକ ଟଙ୍କାପଇସା ଓ ଜିନିଷପତ୍ର ନେଇ ଗୋଟିଏ ଶାଳ୍ ଖୋଲିଦେଲେ । ଶାଳରେ ଦୁଇଟି ତନ୍ତ ପଡ଼ିଥାଏ । ସେମାନେ ସେଠାରେ ଲୁଗା ବୁଣୁଥିବାର ବାହାନା କଲେ । ତନ୍ତରେ କଣ୍ଡା ନ ଥାଏ କି ସୂତା ନ ଥାଏ । ସେମାନେ ଖାଲି ତନ୍ତଟାକୁ ଠକଠାକ୍ କରି ଚଳାଉଥାନ୍ତି ।

ଏ ଭିତରେ ସେହି ନୂଆ ଲୁଗାର ଖବର ରାଜ୍ୟସାରା ବ୍ୟାପିଗଲାଣି । ରଜା କେବେ ସେହି ଲୁଗା ପିନ୍ଧି ବାହାରିବେ ବୋଲି ଲୋକେ ଚାହିଁ ରହିଲେ । କେହି ତ ନିଜ ଯୋଗ୍ୟତା କଥା ଭାବୁ ନ ଥାନ୍ତି; ସମସ୍ତେ ଅନ୍ୟଲୋକଙ୍କ ଅଯୋଗ୍ୟ

ପଣ ଦେଖିବାକୁ ଚାହିଁଥାନ୍ତି । ସେପଟେ ଠକମାନେ ପ୍ରତି ସପ୍ତାହରେ ରଜାଙ୍କଠାରୁ ଆହୁରି ଆହୁରି ରେଶମ ଓ ସୁନାଜରି ମାଗିନେଉଥାନ୍ତି । ସୁବିଧା ଦେଖି ସେସବୁକୁ ନିଜ ଗାଆଁକୁ ପଠାଇ ଦେଉଥାନ୍ତି ।

କିଛିଦିନ ପରେ ରଜାଙ୍କର ନୂଆଲୁଗା ଦେଖିବାକୁ ମନ ହେଲା । ଭାବିଲେ ନିଜେ ଯାଇ ଦେଖି ଆସିବେ । କିନ୍ତୁ ତାଙ୍କର ମନେପଡ଼ିଗଲା ଯେ ସେ ଲୁଗା ଅଯୋଗ୍ୟ ଲୋକଙ୍କୁ ଦିଶିବ ନାହିଁ । ଅବଶ୍ୟ ସେ ନିଜକୁ ଅଯୋଗ୍ୟ ବୋଲି ଭାବୁ ନଥାନ୍ତି । ତଥାପି ତାଙ୍କୁ ଟିକିଏ ଭୟ ଲାଗିଲା । ତେଣୁ ପହିଲି ପାଳିଟା କାମ ଦେଖି ଆସିବାକୁ ସେ ମନ୍ତ୍ରୀକୁ ପଠାଇଦେଲେ । ମନ୍ତ୍ରୀ ତ ବୁଦ୍ଧିମାନ ଲୋକ; ତେଣୁ ରାଜା ଭାବିଲେ ମନ୍ତ୍ରୀ ଗଲେ ଠିକ୍ ହେବ ।

ମନ୍ତ୍ରୀ ଯାଇ ତନ୍ତୀଶାଳରେ ପହଞ୍ଚିଗଲେ । ସେ ଦେଖିଲେ ତନ୍ତରେ ସୂତା ନାହିଁ କି କଣ୍ଡା ନାହିଁ; କାରିଗର ଦି'ଜଣ ମିଛରେ ତନ୍ତଟାକୁ ଚଳାଉଛନ୍ତି । ସେ ଟିକିଏ ବିରକ୍ତ ହେଲେ । ପଚାରିଲେ, "କିହୋ, ଏତେସବୁ ମାଲମତା ଆଣିଲ, ଛଏ କି କାମ କରୁଛ ??"

ଠକ ଦି'ଜଣ ହାତ ଚଞ୍ଚଳ କରିବାର ବାହାନା କଲେ । ବଡ଼ଠକ ହସି ହସି କହିଲା, "ଯାହାହଉ, ଏତେଦିନକେ ମଣିମା କାମ ଦେଖିବାକୁ ଆସିଲେ । ମଣିମା ଦେଖନ୍ତୁ, କାମ ଭଲ ଆଗେଇଛି । ଆସି ଅଧା ଅଧି ବୁଣା ସରିଲାଣି । ଲୁଗାର ଧଡ଼ିଟି ଦେଖୁଛନ୍ତିଟି ? କି ସୁନ୍ଦର ନ ହେଇଛି ! ଡାଳ, ଲତା, ଫୁଲ-କାହାକୁ କିଏ ଊଣା ହେଇଛି ଯେ ? ପ୍ରତ୍ୟେକଟିର ରଙ୍ଗ ଅଲଗା ଅଲଗା । ଲୁଗାର ଦେହ ଦେଖୁ ନାହାନ୍ତି ? କି ପାଲିସ୍ ! ମଣିମା ଭଲ ଜିନିଷ ଲାଗିଛି; ଭଲ କାମ ନ ହେବ କିମିତି ? ମଣିମା ଯିମିତି ରେଶମ

ଦେଇଛନ୍ତି ସିମିତି ସୁନାଜରି, ସିମିତି ମଣିମୁକ୍ତା ଦେଇଛନ୍ତି । କେତେ ରାଜ୍ୟର ରାଜାଙ୍କ ପାଇଁ ଆମେ ଲୁଗା ବୁଣିଥିଲୁ; ହେଲେ ଏଭଳି ଲୁଗା କେବେ ବୁଣି ନ ଥିଲୁ ।''

ଏସବୁ ଶୁଣି ମନ୍ତ୍ରୀଙ୍କ ମୁହଁରୁ ପାଣି ମରିଗଲା । କାରିଗର ଏତେ କଥା କହୁଛି, ଅଥଚ ତାଙ୍କ ଆଖିକୁ କିଛି ଦେଖାଯାଉନି !! କଥା କଣ ? ସେ ଆଖି ମଳି ରୁମାଲରେ ପୋଛିଦେଲେ । ତଥାପି କିଛି ଦେଖିପାରିଲେ ନାହିଁ । ତାଙ୍କ ଅବସ୍ଥା ଦେଖି ସାନଠକ କହିଲା, ''ମଣିମା ଟିକିଏ ପାଖକୁ ଆସୁ ନାହାନ୍ତି ? ଇଏ ପରା ସୂକ୍ଷ୍ମ କାରିଗରି । ନିରେଖି ନ ଚାହିଁଲେ ଦେଖିପାରିବେନି କି ବୁଝିପାରିବେନି ।''

ମନ୍ତ୍ରୀ ଟିକିଏ ପାଖକୁ ଗଲେ । ନିରେଖି ଚାହିଁଲେ । ତାଙ୍କୁ କିଛି ଦିଶୁ ନ ଥାଏ । କିନ୍ତୁ ଠକମାନେ କହୁଥାନ୍ତି, ''ଏ ଡାଳି, ଏ ଫୁଲ ଭଲ ହେଇନି ? ରଙ୍ଗଟା ଠିକ୍ ମାନୁଛି । କଣ ମଣିମା ?'' ମନ୍ତ୍ରୀ କି ଉତ୍ତର ଦେବେ ବୁଝିପାରିଲେ ନାହିଁ । ଭାବିଲେ, ''ବୋଧହୁଏ ମୁଁ ଟିକିଏ ଅଯୋଗ୍ୟ । ତେଣୁ ମତେ କିଛି ଦିଶୁନି । କିନ୍ତୁ କିଛି ଦିଶୁନି ବୋଲି କହିଲେ ମୋ ଅଯୋଗ୍ୟପଣ ପଦାରେ ପଡ଼ିଯିବ । ମୁଁ ସେପରି ବୋକାମି କରିବି ନାହିଁ । ସବୁ ଦେଖାଯାଉଛି ବୋଲି କହିଦେଲେ ଧରାପଡ଼ିବି ନାହିଁ ।'' ଏପରି ଭାବି ସେ ମୁଣ୍ଡ ଟୁଙ୍ଗାରି ଦେଲେ ।

ବଡ଼ଠକ ଦେଖିଲା ମନ୍ତ୍ରୀ ଭେଳିକିରେ ପଡ଼ିଗଲେଣି । ସେ କହିଲା, ''ମଣିମା ତୁଣ୍ଡ ଫିଟାଇ କହୁନାହାନ୍ତି ? ଏ ରଙ୍ଗ ଭଲ ହୋଇଛି, ନା ଅନ୍ୟ ରଙ୍ଗ ଦେବା ?''

ମନ୍ତ୍ରୀ କହିଲେ, ''ନା,ନା; ଏ ରଙ୍ଗ ବଢ଼ିଆ ହୋଇଛି । କିନ୍ତୁ ଆଉ କେତେ ଦିନରେ କାମ ସରିବ ?''

ଠକମାନେ କହିଲେ, ''ମଣିମା, ଆମେ ଆଣିଥିବା

ରେଶମ ସୂତା ଓ ଜରି ସରିଗଲାଣି । ଯେତେ ଶୀଘ୍ର ନୂଆ ମାଲ ମିଳିଯିବ, ସେତେ ଶୀଘ୍ର କାମ ସରିଯିବ ।''

''ଆଚ୍ଛା, ଆଚ୍ଛା,''କହି ମନ୍ତ୍ରୀ ସେଠାରୁ ଫେରିଲେ । ସେ ନଅରକୁ ଫେରୁ ଫେରୁ ରଜା ନୂଆଲୁଗା କଥା ପଚାରିଦେଲେ । ମନ୍ତ୍ରୀ ତ ତାଙ୍କ ଅଯୋଗ୍ୟପଣ ଲୁଚିଗଲା ବୋଲି ଖୁସୀ । ସେ କହିଲେ, ''ମଣିମା, କାମ ଠିକ୍ ଚାଲିଛି । ବଡ଼ ସୁନ୍ଦର ଲୁଗା ହୋଇଛି । କାରିଗରଙ୍କୁ ଆଉ କିଛି ରେଶମ ଓ ଜରି ଯୋଗାଇ ଦେବାକୁ ପଡ଼ିବ ।''

ରଜା ଠକଙ୍କ ପାଖକୁ ଆହୁରି ରେଶମ, ଆହୁରି ଜରି ପଠାଇଦେଲେ । କିଛିଦିନ ପରେ କାମ ଦେଖିବାକୁ କଟୁଆଳ ଗଲେ । ତାଙ୍କୁ ବି ତନ୍ତରେ କିଛି ଲୁଗାପଟା ଥିବାର ଦେଖାଗଲାନି । କିନ୍ତୁ ସେ ସତ କହିବାକୁ ସାହସ ପାଇଲେନି । ସେ ଭାବିଲେ, ''ମୁଁ ଅଯୋଗ୍ୟ ବୋଲି ମତେ ଦିଶୁନି ।'' ନିଜର ଅଯୋଗ୍ୟପଣ ଲୁଚାଇବାକୁ ସେ ମନ୍ତ୍ରୀଙ୍କ ବାଟ ଧରିଲେ । ସେ ମଧ୍ୟ ମିଛ ଲୁଗାର ପ୍ରଶଂସା କଲେ । ଏପରି ଭାବରେ କେହି ସେହି ଲୁଗା ଦେଖିପାରିଲେ ନାହିଁ । କିନ୍ତୁ କେହି ସତ କହିବାକୁ ସାହସ କଲେ ନାହିଁ । କେହି ନିଜକୁ ଅଯୋଗ୍ୟ ବୋଲି କହିଲେ ନାହିଁ । ସମସ୍ତେ ମିଛଟାକୁ ସତ ବୋଲି କହିଦେଲେ ।

ଦିନେ ନିଜେ ରଜା ନୂଆ ଲୁଗା ଦେଖିବାକୁ ଚାଲିଗଲେ । ତାଙ୍କ ସାଥିରେ ଦରବାରର ସବୁ ବଡ଼ ଲୋକ ଚାଲିଲେ । ସମସ୍ତେ ତ ଠକଙ୍କ ଖାପଚରେ ପଡ଼ି ସାରିଥାନ୍ତି । ଠକ ଦିଜଣ ରଜାଙ୍କ ଛାମୁରେ ବି ମିଛ ଲୁଗାର ପ୍ରଶଂସା କଲେ । କହିଲେ, ''ମଣିମା, ଏ ଲୁଗା ଯେ ଦେଖୁଛି ସେ କହୁଛି ସୁନ୍ଦର ହୋଇଛି । ଛାମୁଙ୍କ ଆଖିକୁ କିମିତି ଦେଖାଯାଉଛି କହନ୍ତୁ ।''

ରଜାଙ୍କୁ ତ କିଛି ଦିଶୁ ନଥାଏ । ସେ ବଡ଼ ଅଡୁଆରେ ପଡ଼ିଗଲେ । ଅନ୍ୟ ସମସ୍ତଙ୍କୁ ଦିଶିଲା, ତାଙ୍କୁ କାହିଁକି ନ ଦିଶିଲା ?? ସତ କହିଦେଲେ ମଲେ । ଅଯୋଗ୍ୟ ବୋଲି ପ୍ରମାଣ ହୋଇଯିବ । କିନ୍ତୁ ଏତେ ଲୋକଙ୍କ ଆଗରେ ଅଯୋଗ୍ୟ ବୋଲି ଧରାପଡ଼ିଯିବେ ନା ? ତେଣୁ ସେ ବି ସତ କହିବାକୁ ଡରିଲେ । ଫଳରେ ସେ ବି ମିଛ ଲୁଗାର ପ୍ରଶଂସା କଲେ ।

ଠକମାନଙ୍କର ଜିତାପଟ ହୋଇଗଲା । ସେମାନେ ମାପଫିତା ଆଣି ରଜାଙ୍କ ପୋଷାକର ମାପ ନେଇଗଲେ । ପୋଷାକ ପାଇଁ କନା କଟା ହେବ । କନା କାଟିବାକୁ ରଜା ସୁନା କଇଁଚି ପଠାଇଦେଲେ । ଠକ ଦିଜଣ ଶୂନ୍ୟରେ ସୁନା କଇଁଚି ଚଳାଇଲେ, ଛୁଞ୍ଚିରେ ସୂତା ନଥାଏ । ସେହି ଛୁଞ୍ଚି ଧରି ସିଲେଇ କରିବାର ବାହାନା କଲେ । ଲୋକେ ଏକଥା ଦେଖୁଥାନ୍ତି, କିନ୍ତୁ ସତ କହିବାକୁ ଡରୁଥାନ୍ତି । ଏପରି କିଛିଦିନ ଗଲା । ଏଥର ଠକମାନେ ନଅରରୁ ସୁନାଥାଳି ମଗାଇଲେ । କହିଲେ, "ରଜାଙ୍କ ଲୁଗାପଟା ସଜ ହୋଇଗଲା । ସେ ଲୁଗା ସୁନାଥାଳିରେ ନଅରକୁ ପଠାଯିବ ।"

ନଅରରୁ ସୁନାଥାଳି ଆସିଲା । ସେଥିରେ ନୂଆ ଲୁଗା ନେଉଥିବାର ବାହାନା କରି ଠକମାନେ ଚାଲିଲେ । ରାଜାତ ନୂଆ ଲୁଗା ପିନ୍ଧିଲେ ପଟୁଆରରେ ବାହାରନ୍ତି । ତେଣୁ ପଟୁଆର ପାଇଁ ବଡ଼ଦାଣ୍ଡରେ ବାଜା, ବାଣ ଓ ଫୁଲଗଛର ଆୟୋଜନ ଚାଲିଲା । ଏ ଭିତରେ ଠକମାନେ ମିଛଲୁଗା ଧରି ରାଜାଙ୍କ ପାଖରେ ପହଞ୍ଚିଗଲେ । କହିଲେ, "ମଣିମା, ଲୁଗା ଦେଖନ୍ତୁ । ଏଇଟି ହେଲା ମଣିମାଙ୍କ ଧୋତି । ଏଇଟି ଚଦର । ଏଇଟି କୁର୍ତ୍ତା । ଇମିତି ଲୁଗା ମଣିମା କେବେ ପିନ୍ଧି ନଥିବେ । ଏ ଲୁଗା କେଡ଼େ ହାଲୁକା ଦେଖନ୍ତୁ । ପିନ୍ଧିଲେ ଦେହକୁ ଲାଗିବ ନାହିଁ । ଆସନ୍ତୁ । ପୁରୁଣା ଲୁଗା ଥୋଇ ନୂଆ

ଲୁଗା ପିନ୍ଧିବେ । ଆମେ ପିନ୍ଧାଇଦେଇ ଯିବୁ । ଆମ ଦେଶରୁ ଖବର ଆସିଲାଣି । ଛାମୁଙ୍କଠାରୁ ବିଦା ହୋଇ ଆମେ ଦେଶକୁ ଚାଲିଯିବୁ ।''

ରଜା ମହାଖୁସିରେ ଦର୍ପଣ ପାଖକୁ ଚାଲିଗଲେ । ଗର୍ବରେ ତାଙ୍କର ଛାତି ଫୁଲିଉଠୁଥାଏ । ସେ ନୂଆ ଲୁଗା ପିନ୍ଧିବାକୁ ପୁରୁଣା ଲୁଗା ଓହ୍ଲାଇଦେଲେ । ଅଣ୍ଟାରେ ଖାଲି ଚଡ଼ି ଖଣ୍ଡିକ ରହିଲା । ସେ ଫୁଙ୍ଗୁଳା ଦେହରେ ଠିଆ ହୋଇଥାନ୍ତି, ଠକମାନେ ତାଙ୍କୁ ନୂଆ ଲୁଗା ପିନ୍ଧାଇବାର ବାହାନା କଲେ । କହିଲେ, ''ମଣିମା ଟିକିଏ ଏପଟକୁ ବୁଲନ୍ତୁ । ଟିକିଏ କୁଞ୍ଚଟା କରିଦିଏ । ହେଇଟି କୁର୍ତ୍ତା ପିନ୍ଧନ୍ତୁ । ଏ ବୋତାମଟା ଲଗାଇଦିଏ । ଏ ଚଦରଟା... ।'' ଶେଷରେ ସେମାନେ ରଜାଙ୍କୁ ସୁନାମୁକୁଟ ପିନ୍ଧାଇଦେଲେ । ଏପରି କରି ସେମାନେ ଫୁଙ୍ଗୁଳା ଦେହରେ ତାଙ୍କୁ ପଟୁଆରରେ ପଠାଇଦେଲେ । ପାତ୍ରମନ୍ତ୍ରୀ ଅପେକ୍ଷା କରିଥାନ୍ତି । ରଜା ଯାଇ ପଚାରିଲେ, ''ଆହେ, ମତେ ଏ ନୂଆ ଲୁଗା ଭଲ ମାନୁ ନାହିଁ ?''

ସମସ୍ତେ ତ ମିଛକୁ ସତ ବୋଲି କହି ଆସିଛନ୍ତି । ଏବେ କେମିତି ସତକୁ ସତ ବୋଲି କହିବେ ? ସମସ୍ତେ କହିଲେ, ''ବାଃ,ମଣିମାଙ୍କୁ ସତରେ ଏ ଲୁଗା ବଢ଼ିଆ ମାନୁଛି ।'' ରଜା ଗର୍ବରେ ଫୁଲିଗଲେ । ଦରବାର୍ ଲୋକେ ଫୁଙ୍ଗୁଳା ରଜାଙ୍କୁ ନେଇ ପଟୁଆର ଆରମ୍ଭ କରିଦେଲେ । ରଜାଙ୍କ ଚଦର ଟେକି ଧରିବାକୁ ଦିଜଣ ଟହଲିଆ ଥାଆନ୍ତି । ସେମାନେ ବି ମିଛ ଚଦରକୁ ଟେକି ଧରିବାର ବାହାନା କରି ଚାଲିଲେ । ରଜାଙ୍କୁ ଦେଖିବାକୁ ବଡ଼ଦାଣ୍ଡର ଦିଁ ପାଖରେ ଲୋକ ଜମିଥାନ୍ତି । ଫୁଙ୍ଗୁଳା ରଜାଙ୍କୁ ଦେଖି ସେମାନେ ମନେ ମନେ ହସିଲେ । କିନ୍ତୁ ସତ କହିବାକୁ ସାହସ ପାଇଲାନି । ସମସ୍ତେ ତ ନିଜକୁ ଯୋଗ୍ୟ ବୋଲି ଭାବୁଥାନ୍ତି । ସତ କହି ଅଯୋଗ୍ୟ ହେବ

କିଏ ? ଓଲଟି ଲୋକେ ଭାବିଲେ, ''ଆମେ ଅଯୋଗ୍ୟ ବୋଲି ଲୁଗାପଟା ଦେଖିପାରୁନୁ । ଅନ୍ୟମାନେ ଦେଖୁଥିବେ ।'' ତେଣୁ ନିଜ ଅଯୋଗ୍ୟପଣ ଲୁଚାଇବାକୁ ସମସ୍ତେ ମିଛ ଲୁଗାର ପ୍ରଶଂସା କଲେ ।



ଲୋକଙ୍କ ଗହଳରେ ଗୋଟିଏ ଛୋଟ ପିଲା ଥାଏ। ସେ ତା ବାପା କାନ୍ଧରେ ବସି ଚାହିଁଥାଏ । ତା ବାପା ପୁଅକୁ ପଚାରିଲା, ''ଦେଖୁଛୁ ମଣି ? ରଜା କେଡ଼େ ବଢ଼ିଆ ଲୁଗା ପିନ୍ଧିଛନ୍ତି ଦେଖୁଛୁ ଟି ?''

ଛୋଟ ପିଲା । ତା ମୁଣ୍ଡରେ ଛନ୍ଦ କପଟ ନ ଥାଏ। ସେ ମିଛ ନ କହି ସତ କହିଦେଲା । ସେ ପାଟି କରି କହିଲା,''କାହିଁ ମ ବାପା ? ରାଜାଙ୍କ ଦେହରେ ତ ଜମାରୁ ଲୁଗା ନାହିଁ । ସେ ତ ଫୁଙ୍ଗୁଳା ହୋଇ ଚାଲୁଛନ୍ତି ।''

ବାପା ନିଜ ପାଟିରେ ହାତ ଦେଇ ପୁଅକୁ ଚୁପ୍ କରାଇଲା । କହିଲା, ''ଆରେ ଓଲୁ, ସିମିତି କହନ୍ତି ନାହିଁ ।''

କିନ୍ତୁ ସେ ପିଲା ଆହୁରି ପାଟିକରି କହିଲା, ''ସତରେ ବାପା, ରଜା ଫୁଙ୍ଗୁଳା ଦେହରେ ଚାଲୁଛନ୍ତି । ତାଙ୍କ ଦେହରେ ଖାଲି ଚଡ଼ିଟିଏ ଅଛି । ଲୁଗା ନାହିଁ ।''

ଏକଥା ଅନ୍ୟମାନଙ୍କ କାନରେ ପଡ଼ିଲା । ସେମାନଙ୍କ ପାଟିରୁ ବି ବାହାରି ପଡ଼ିଲା, ''ସତେ ତ ! ରଜା ଫୁଙ୍ଗୁଳା ଦେହରେ ଚାଲୁଛନ୍ତି ।''ଚାହୁଁ ଚାହୁଁ କଥାଟା ଚାରିଆଡ଼େ ପ୍ରଘଟ ହୋଇଗଲା । ଶେଷରେ ସେ କଥା ରଜାଙ୍କ କାନରେ ବି ପଡ଼ିଲା । ଏତେବେଳେ ଯାଇ ରଜା ନିଜର ଭୁଲ ବୁଝିପାରିଲେ । ସେ ମୁଣ୍ଡ ପୋତି ଦେଇ ନଅରକୁ ଧାଇଁ ପଳାଇଲେ । ''ଆରେ, ସେ ଠକ ଦିଇଟାକୁ ଧର ଧର,'' ବୋଲି ସମସ୍ତେ ପାଟିକଲେ । କିନ୍ତୁ ସେତେବେଳକୁ ଠକ ଦିଜଣ ଚମ୍ପଟ ଛୁ ଦେଲେଣି ।

ସତ କହିବାକୁ ଡରିଲେ ମଣିଷ ଇମିତି ହୀନସ୍ତା ହୁଏ । ତେଣୁ କଥାରେ ଅଛି-

ସତ କହି ପଛେ ମଲେ ମରିବି,
ସତ କହିବାକୁ କିଆଁ ଡରିବି ?

# ଉଡ଼ନ୍ତା ସିନ୍ଦୁକ

ଜଣେ ମହାଜନ ବହୁତ ସୁନାରୁପା ସଞ୍ଚିଥିଲେ । ଚାହିଁଥିଲେ ସେ ସାରା ବଡ଼ଦାଣ୍ଡଟା ସୁନାରୁପାରେ ଛାଇ ଦେଇଥାନ୍ତେ । କିନ୍ତୁ ନା, ସେ କିଛି କରିପାରିଲେନି । ଖାଲି ଧନ ସଞ୍ଚି ସଞ୍ଚି ମରିଗଲେ । ତାଙ୍କ ଅନ୍ତେ ତାଙ୍କ ପୁଅ ସବୁ ସମ୍ପତ୍ତିର ମାଲିକ ହେଲା । ସେ ତା ବାପର ଠିକ୍ ଓଲଟା । ସେ ଧନ ସଞ୍ଚିବା ଜାଣି ନ ଥିଲା । ଜାଣିଥିଲା ଖାଲି ଧନ ଉଡ଼ାଇବା ଓ ଗପ କହିବା । ବସି ଖାଇଲେ ନଈ ବାଲି ସରେ । ସେ ମହାଜନ ପୁଅ ସାଙ୍ଗ ସୁଖ ମେଳରେ ସବୁ ସମ୍ପତ୍ତି ଉଡ଼ାଇଦେଲା । ଦିନ କେତେଟା ଭିତରେ ସେ ଫଟାଦରିଦ୍ର ହୋଇଗଲା । ଘରେ ଆଉ କିଛି ରହିଲା ନାହିଁ । ରହିଗଲା କେବଳ ତା ବାପ ଅମଳର ଗୋଟିଏ ସାର ଛିଲା ରେଶମ ପୋଷାକ ।

ତା'ର ଦରିଦ୍ର ଅବସ୍ଥା ଦେଖି ଜଣେ ବନ୍ଧୁ ତା ପାଖକୁ ଗୋଟିଏ କାଠ ସିନ୍ଦୁକ ପଠାଇଦେଲେ । କହିଲେ, "ଘରେ ଯାହା ବା ଦିଖଣ୍ଡ ଅଛି ସେତକ ସିନ୍ଦୁକରେ ରଖି ସେ ବିଦେଶ ପଳାଉ । ବିଦେଶରେ ଛୋଟକାଟିଆ ବେପାରଟିଏ କରି ଲାଗି ପଡ଼ିଲେ ଭାଗ୍ୟ ବଦଳିଯିବ । କିନ୍ତୁ ସେ ଟୋକାର ଆଉ ଥିଲା କଣ ଯେ ସିନ୍ଦୁକରେ ରଖନ୍ତା । ଛିଲା ରେଶମ ପୋଷାକଟି ପିନ୍ଧି ସେ ନିଜେ ସିନ୍ଦୁକ ଭିତରେ ବସି ପଡ଼ିଲା । ସିନ୍ଦୁକର ଢାଙ୍କୁଣି ବନ୍ଦ କରିଦେଇ କହିଲା, "ମୁଁ ତ ଏତେ ବଡ଼

ସିନ୍ଦୁକ ଟେକି ନେଇ ପାରିବିନି । ଯଦି ପାରୁଛି, ଏ ସିନ୍ଦୁକ ମତେ ଟେକି ନେଉ ।''

ସେ ସିନ୍ଦୁକରେ କି କୁହୁକ ଥିଲା କେଜାଣି, ତା ପାଟିରୁ ଏତକ ବାହାରିଛି କି ନାହିଁ, ସିନ୍ଦୁକଟା ଆପଣାଛାଏଁ ଉପରକୁ ଉଠିଗଲା । ଉପରକୁ ଉଠି ଆକାଶରେ ଉଡ଼ି ଉଡ଼ିକା ସେଠାରୁ ପଳାଇଗଲା । କିନ୍ତୁ ମହାଜନ ପୁଅ ସେ ଭିତରେ ବସି ଭାବିଲା, ''ଖାସା କଥା ହେଲା ! ଯଦି ନଈ କି ସମୁଦ୍ରରେ ଖସିପଡ଼ିବ ତେବେ ମୁଁ ବୁଡ଼ି ମରିବି । ଯଦି ପାହାଡ଼ ପର୍ବତରେ ବାଜିଯିବ, ତେବେ ମୋ ହାଡ଼-ଗୋଡ଼ ଚୂନା ହୋଇଯିବ । ମତେ ଏ ସିନ୍ଦୁକ ଭଲା କେଉଁ ଦୂରଦେଶରେ ଧୀରେ ଖସାଇ ଦିଅନ୍ତା କି ତେବେ ଜାଣନ୍ତି ଏ ସିନ୍ଦୁକର ମୋ ଉପରେ ଦୟା ଅଛି ।''

ସତକୁ ସତ ମହାଜନ ପୁଅକୁ ଧରି ସେ ସିନ୍ଦୁକ ଦୂରଦେଶକୁ ଉଡ଼ିଗଲା ଏବଂ ତାକୁ ନେଇ ଗୋଟିଏ ସହର ପାଖ ବଣ ମଝିରେ ଓହ୍ଲାଇ ଦେଲା । ସିନ୍ଦୁକ ରହିଯିବାରୁ ମହାଜନ ପୁଅ ଢାଙ୍କୁଣି ଖୋଲି ବାହାରି ଆସିଲା । ବଣ ଭିତରେ ବାଟ ଖୋଜୁ ଖୋଜୁ ତାକୁ ସହରକୁ ବାଟ ମିଳିଗଲା । ସିନ୍ଦୁକକୁ ଗଛ ଗହଳରେ ଲୁଚାଇ ରଖି ସେ ସହରକୁ ଚାଲିଗଲା । ସେଠାକୁ ଯାଇ ବୁଝେ ତ ସେଇଟା ହେଉଛି ତୁର୍କୀ ଦେଶର ରାଜଧାନୀ ।

ସେଇଟା କିଛି ସାମାନ୍ୟ ସହର ନୁହେଁ । ସେଠାରେ ଯେ କେତେ କିଲ୍ଲା, କେତେ ମହଲ, କେତେ ମସ୍‌ଜିଦ୍ ତା'ର କଳନା ନାହିଁ । ସହର ବୁଲି ଦେଖୁ ଦେଖୁ ଦେଖିଲା ଯେ, ସେଠାର ବାଦଶାହାଙ୍କ କିଲ୍ଲା ପାଖରେ ଗୋଟିଏ ସୁନ୍ଦର ମହଲ ଅଛି । କିନ୍ତୁ ସେ ମହଲ ପାଖରେ ଲୋକ ନ ଥାନ୍ତି କି

ମହଲ ଭିତରୁ ପାଟିତୁଣ୍ଡ ଶୁଭୁ ନ ଥାଏ । ପୁଣି **ଦେଖିଲା** ଯେ, ଚାଲି ଯାଉଥିବା ଲୋକେ ବି ସେ ପାଖରୁ ଆଡ଼େଇ ହୋଇ ଯାଉଛନ୍ତି । ଘଟଣା ଦେଖି ମହାଜନ ପୁଅ ଆଚମ୍ବିତ ହୋଇଗଲା । **ସେହି ବାଟ** ଦେଇ ଜଣେ ମୁଲ୍ଲା ଯାଉଥିଲେ । ଏ ଟୋକା ତାଙ୍କୁ ପଚାରିଲା, ''ଏ ମିଆଁ ସାହେବ, ଏ ନିର୍ଜନ ମହଲଟି କାହାର କି ?''

ମୁଲ୍ଲା ତା ଉପରେ ତାଳୁରୁ ତଳିପା ଯାଏଁ ଆଖି ବୁଲାଇ ଆଣିଲେ । ଦାଢ଼ି **ଆଉଁଶି ଆଉଁଶି** କହିଲେ, ''ତୁମେ ବୋଧହୁଏ ପରଦେଶୀ ଆଦ୍‌ମି ଅଛ । ଏ ମହଲ ପରା ଶାହଜାଦୀଙ୍କ ମହଲ ।''

''ଶାହଜାଦୀ !!''—ମହାଜନ ପୁଅ କିଛି ବୁଝିପାରିଲାନି ।

ମୁଲ୍ଲା ତାକୁ ବୁଝାଇଦେଲେ, ''ଆହେ, ବାଦଶାହଙ୍କ ଝିଅକୁ ଶାହଜାଦୀ ବୋଲାଯାଏ । ଆମ ଶାହଜାଦୀ ଜନ୍ମ ହେବାପରେ ବାଦଶାହଙ୍କୁ ଜଣେ ଜ୍ୟୋତିଷୀ କହିଲେ, ''ଶାହଜାଦୀ ସୁନ୍ଦରୀ ଓ ସ୍ୱାସ୍ଥ୍ୟବତୀ ହେବେ, କିନ୍ତୁ ଯେଉଁ ଦିନ କେହି ୟାଙ୍କୁ ଭଲପାଇ ବାହା ହେବାକୁ ଆସିବ,ସେହିଦିନଠାରୁ ଇଏ ବଡ଼ ଦୁଃଖ ପାଇବେ ।' ବାଦଶାହ କହିଲେ, 'ମୋ ଝିଅକୁ କେହି ଦେଖିଲେ ସିନା ଭଲ ପାଇ ବାହା ହେବାକୁ କହିବ । ମୁଁ ମୋ ଝିଅକୁ ଇମିତି ଗୋଟିଏ ମହଲରେ ରଖିଦେବି ଯେ, ତାକୁ କେହି ପୁରୁଷ ଦେଖିପାରିବେ ନାହିଁ । ମୋ ଝିଅ ସେଠାରେ ସୁଖରେ ରହିବ । ଯଦି କେହିଁ ଚାଲିଆସେ, ତେବେ ଜାଣିବା ସେଇଟା ଆଲ୍ଲାଙ୍କ ବରାଦ । ବାହାଘର କରାଇଦେବା । ତେଣିକି ଯାହା ହେବାର ଥିବ ହେବ ।' ସେହିଦିନଠାରୁ ଶାହଜାଦୀ ଏହି ମହଲରେ ରହନ୍ତି । ଏବେ ତାଙ୍କର ବାହା ବୟସ ହୋଇଗଲାଣି । ଦେଖାଯାଉ ଖୁଦା କ'ଣ କରୁଛନ୍ତି ।''

ଏକଥା ଶୁଣି ମହାଜନ ପୁଅର ଶାହଜାଦୀଙ୍କୁ ଦେଖିବାକୁ ମନ ହେଲା । ମନକଥା ମନରେ ରଖି ସେ ବଣକୁ ପଳାଇ ଆସିଲା । ଆସି ସିନ୍ଦୁକ ଭିତରେ ବସିପଡ଼ି କହିଲା, "ସତେ ଯଦି ଇଏ ଉଡ଼ନ୍ତା ସିନ୍ଦୁକ ହୋଇଥିବ, ମତେ ନେଇ ଶାହଜାଦୀଙ୍କ ମହଲରେ ଓହ୍ଲାଇଦେବ ।" ସେ ଏକଥା କହୁ କହୁ ସିନ୍ଦୁକ ଉପରକୁ ଉଠିଲା । କିଛି ସମୟ ଭିତରେ ମହାଜନ ପୁଅ ଯାଇ ଶାହଜାଦୀଙ୍କ ମହଲରେ ଓହ୍ଲାଇ ପଡ଼ିଲା ।

ସେତେବେଳକୁ ରାତି ଅଧ । ଚାରିଆଡ଼ ଅନ୍ଧାର । ଲୋକବାକ ତ ସେତେ ନ ଥାନ୍ତି । କେଉଁଠି କେମିତି ଦୀପଟିଏ ଜଳୁଥାଏ । ମହାଜନ ପୁଅ ମହଲର କୋଠରି କୋଠରି ବୁଲୁବୁଲୁ ଯାଇ ଶାହଜାଦୀ ଶୋଇଥିବା କୋଠରିରେ ପଶିଗଲା । ଶାହଜାଦୀ ଖାଇପିଇ ଆରାମରେ ଶୋଇଥାନ୍ତି । ଦୀପ ଜଳୁଥାଏ । ରେଶମର ଲୁଗାପଟା ଝଲମଲ କରୁଥାଏ । ସେ ଭିତରେ ଶାହଜାଦୀ ବଡ଼ ସୁନ୍ଦର ଦେଖାଯାଉଥାନ୍ତି । ତାଙ୍କ ରୂପ ଦେଖି ମହାଜନ ପୁଅ ମୋହିତ ହୋଇଗଲା । ସେ ଯାଇ ତାଙ୍କ ଖଟ ଉପରେ ବସିପଡ଼ି ତାଙ୍କ ହାତ ଧରି ପକାଇଲା । ଶାହଜାଦୀଙ୍କ ନିଦ ଭାଙ୍ଗିଗଲା । ସେ ଚାହିଁ ଦେଖନ୍ତି ତ ସୁନ୍ଦର ଯୁବାଟିଏ ତାଙ୍କ ଖଟରେ ବସିଛି । ସେ ପଚାରିଲେ, "ତୁମେ କିଏ ? ଏଠିକି କିପରି ଆସିଲ ?"

ମହାଜନ ପୁଅ ତ ଗପ କହି କହି ନାନା କଥା ଶିଖିଥିଲା । ସେ କହିଦେଲା, "ମୁଁ ସ୍ୱର୍ଗର ଲୋକ । ମର୍ତ୍ତ୍ୟର ରୂପ ଦେଖିବାକୁ ଆସିଛି । ଦେଖିଲି ମର୍ତ୍ତ୍ୟମଣ୍ଡଳରେ ଯେତେ ଝିଅ ଅଛନ୍ତି, ତୁମେ ହେଉଛ ସେମାନଙ୍କ ଭିତରେ ସବୁଠାରୁ ବେଶି ସୁନ୍ଦରୀ ।" ଏଭଳି ଗପ କରୁ କରୁ ଦିହିଙ୍କର ବାହା ହେବା କଥା ପଡ଼ିଲା । ଶାହଜାଦୀ କହିଲେ, "ଦେଖ, ତୁମେ ଯଦି ଗପ କହି ମୋ ବାପାମାଆଙ୍କୁ ଖୁସୀ କରିପାରିବ, ତେବେ ସେମାନେ ମତେ

ତୁମ ସାଥିରେ ବାହା ଦେବେ । ନ ହେଲେ ନାହିଁ । କ'ଣ ତୁମେ ଗପ କହି ଖୁସୀ **କରିପାରିବ** ?''

ମହାଜନ ପୁଅ କହିଲା, ''ମତେ ତ ଅନେକ ଗପ ଜଣା । କେବେ ଦେଖା ହେଲେ ସିନା ଗପ କହିବି ।''

ଶାହଜାଦୀ କହିଲେ, ''ଆସନ୍ତା ଶୁକ୍ରବାର ଦିନ ମୋ ବାପା ମାଆ ନମାଜ ପଢ଼ିସାରି ଏଠିକି ଆସିବେ । ଏଠାରେ ସନ୍ଧ୍ୟାବେଳେ ରହିବେ । ତୁମେ ସେତେବେଳେ ଆସିବ ।''

ମହାଜନ ପୁଅ ପଚାରିଲା, ''ସେମାନେ କିଭଳି ଗପ ଭଲ ପାଆନ୍ତି ?''

ଶାହଜାଦୀ କହିଲେ, ''ମାଆ ହସ କୌତୁକ ଗପ ଶୁଣିବାକୁ ଭଲ ପାଆନ୍ତି । କିନ୍ତୁ ବାପା ଚାହାନ୍ତି ନୀତିଶିକ୍ଷା ଥିବା ଗପ । ତୁମେ ଏପରି ଗପ କହିବ ଯେ ସେଥିରେ ହସ କଥା ଥିବ ପୁଣି **ନୀତିକଥା** ମଧ୍ୟ ଥିବ । କ'ଣ ପାରିବ ଟି ?''

ମହାଜନ ପୁଅ କହିଲା, ''ନିଶ୍ଚୟ ପାରିବି ।'' ଏପରି ଗପସପ ହୋଇ ସେ ସିନ୍ଦୁକରେ ବସି ବଣକୁ ଫେରିଲା । ଫେରିଲାବେଳେ ଶାହଜାଦୀ ତାକୁ ଅନେକ ଧନରତ୍ନ ଦେଇଥାନ୍ତି । ସେଥିରୁ କିଛି ସହରରେ ବିକି ସେ ନିଜ ପାଇଁ ଭଲ ଭଲ ପୋଷାକ ଓ ଖାନାପିନା କିଣି ପକାଇଲା । ତା'ପରେ ବଣରେ ବସି ମନେ ମନେ ଗୋଟିଏ ସୁନ୍ଦର ଗପ ଯୋଡ଼ିଲା । ଶୁକ୍ରବାର ସନ୍ଧ୍ୟାରେ ସେ ବେଶଭୂଷା ହୋଇ ଶାହଜାଦୀଙ୍କ ମହଲକୁ ସିନ୍ଦୁକରେ ପଳାଇଆସିଲା । ସେତେବେଳକୁ ବାଦଶାହା ଓ ବେଗମ ଆସି ଶାହଜାଦୀଙ୍କ ପାଖରେ ବସିଥାନ୍ତି । ଶାହଜାଦୀ ସେମାନଙ୍କୁ ସ୍ୱର୍ଗରୁ ଲୋକ ଆସିଥିବା କଥା କହିଥାନ୍ତି । ତେଣୁ ମହାଜନ ପୁଅକୁ ଦେଖୁ ଦେଖୁ ସେ ରାଜାଙ୍କୁ କହିଲେ, ''ଆବ୍‌ବାଜାନ୍, ମୁଁ ଯେଉଁ ସ୍ୱର୍ଗର ଲୋକ କଥା କହୁଥିଲି,

ଛଏ ହେଉଛନ୍ତି ସେହି ।''

ବାଦଶାହ ଓ ବେଗମ ତାକୁ ଦେଖି ଭାବିନେଲେ ଯେ, ସେ ସତରେ ସ୍ୱର୍ଗରୁ ଆସିଥିବ । ତେଣୁ ବାଦଶାହ କହିଲେ, ''ସ୍ୱର୍ଗର ଲୋକଙ୍କୁ ବାହା ହେଲେ ଆମ ଝିଅ ସୁଖରେ ରହିବ । ତୁମେ ଯଦି ସତରେ ସ୍ୱର୍ଗର ଲୋକ ହୋଇଥିବ, ତେବେ ତୁମକୁ ଭଲ ଭଲ **ନୀତିକଥା** ଜଣାଥିବ । ସେଥିରୁ ଗୋଟିଏ କହିଲ ।''

କିନ୍ତୁ ବେଗମ କହିଲେ, ''ସବୁବେଳେ କେତେ ନୀତି ନୀତି ହେଉଛ ଯେ । ସ୍ୱର୍ଗର ଲୋକ ତ ହସଖୁସିରେ ଥାଆନ୍ତି । ସେ ହସଖୁସିର କଥାଟିଏ କହନ୍ତୁ ।''

ବାଦଶାହ ଓ ବେଗମଙ୍କର ସତରେ ଗପ ଶୁଣିବାକୁ ଇଚ୍ଛା ଥାଏ । ତାହା ଦେଖି ମହାଜନ ପୁଅ ତା ଗପକୁହା ଆରମ୍ଭ କରିଦେଲା-

ଜଣେ ଧନୀ ଲୋକ ଥାଆନ୍ତି । ତାଙ୍କ ରୋଷଘର ଝରକା ଧାରରେ କେତୋଟି ଦିଆସିଲି କାଠି ରହିଥାଏ । ଦିଆସିଲି କାଠିଙ୍କର ବଂଶ ଗାରିମା କହିଲେ ନ ସରେ । କିନ୍ତୁ ସେମାନଙ୍କ ସହିତ **ରୋଷଘରର** ଲୁହାକରେଇର ବଡ଼ ଦୋସ୍ତି ଥାଏ । ସେମାନେ ଏକାଠି ବସି ବେଳେବେଳେ ଗପ କରନ୍ତି । ଦିନେ ନିଜର ବଂଶ ଗାରିମା ବଖାଣୁ ବଖାଣୁ ଗୋଟିଏ ଦିଆସିଲି କାଠି କହିଲା, 'ବୁଝିଲୁ ଭାଇ, ଆମେ କିଛି ଇମିତି ସିମିତି ଘରର ଛୁଆ ନୋହୁ । ଆମ ଜେଜେ ଥିଲେ ଜଣେ ମହାଦ୍ରୁମ—ବଣର ସବୁଠାରୁ ବଡ଼ ଗଛ । ପୁଣି ଆମେ ଯେଉଁ ଡାଳରୁ ଜନ୍ମ ହେଲୁ ସେ ଥିଲେ ସେ ଗଛର ଏକ ବଡ଼ ଡାଳ । **ଦୁନିଆଯାକର** ପବନ ଆସି ଆମ ଜେଜେଙ୍କ ସାଙ୍ଗରେ ଖେଳୁଥିଲେ । କେତେ ଚଢ଼େଇ ତାଙ୍କୁ ଆଶ୍ରା କରି ରହିଥିଲେ ସୁମାରି କରି ହେବନି । ଜାତି ଜାତିକା

ଚଢ଼େଇ ଆମ ଘରେ ଗୀତ ଗାଆନ୍ତି । କେତେ ଦୁନିଆର କେତେ ଖବର ଶୁଣାନ୍ତି । ଆମେ ସବୁଦିନ ସକାଳେ କାକର ଟୋପାରୁ ଚାହା ଖାଉ । ରାତିରେ କାକର ଟୋପାରୁ କଫି ଖାଉ । କିନ୍ତୁ ହାୟ ! ଆମର ସେ ସୁଖର ଦିନ ସରିଗଲା । ଆଜି ଆମେ ଆସି ଏ ଧୂଆଁଖିଆ ରୋଷଘରେ ପଡ଼ିଛୁ । ଆମ ସୁଖର ଦିନ କିପରି ସରିଗଲା ଜାଣିଛ ?'

ଲୁହା କରେଇ ପଚାରିଲା, "ମୁଁ କିମିତି ସେ କଥା ଜାଣିବି ?"

ଦିଆସିଲି କାଠି କହିଲା, "ଶୁଣୁନା ? ଦିନେ କ'ଣ ହେଲା ନା, ଜଣେ କାଠୁରିଆ ଆସି ଆମ ଜେଜେଙ୍କୁ ମୂଳରୁ କାଟିଦେଲା । ଓଃ ! ସେ ଲୋକଟା ଦେହରେ ଟିକିଏ ବି ଦୟାମାୟା ନ ଥାଏ । ଡାଳପତ୍ର କାଟିସାରି ଆମ ଜେଜେଙ୍କୁ ଗାଡ଼ିରେ ପକାଇ ବୋହିନେଲା । କହିଲା ତାଙ୍କୁ ନେଇ ଜାହାଜର ମାସ୍ତୁଲ କରିବ । ସତରେ ଆମ ଜେଜେ ତ ବିରାଟ ଲୋକ । ତାଙ୍କ ଚେହେରା ଦେଖି ଜଣେ ଜାହାଜ ମାଲିକ ତାଙ୍କୁ କାଠୁରିଆଠୁ କିଣିନେଲା । ତାଙ୍କୁ ନେଇ ତା'ର ନୂଆ ଜାହାଜର ମଝି ମାସ୍ତୁଲ କରିଦେଲା । ଆମ ଜେଜେ ସେହିଦିନଠୁଁ ଜାହାଜ ଚଢ଼ି ଦୁନିଆର ସବୁ ଦେଶ ବୁଲି ଆସିଲେଣି । ସେ କାଠୁରିଆ ଡାଳଗୁଡ଼ାକ ନେଇ ଗୋଟିଏ କରତକଲରେ ବିକିଦେଲା । କରତକଳ ମାଲିକ ଭଲ ଭଲ ଡାଳକୁ ତା କରତରେ କାଟି ସୁନ୍ଦର ଚିକ୍କଣ କାଠି କରିଦେଲା । ଆମ ଦିହକୁ ଦେଖୁନା । ଆମେ ସବୁ ସେଇଠିକା ଗଢ଼ା । ଆମକୁ ଜଣେ ଦିଆସିଲି କାରଖାନା ମାଲିକ କିଣିନେଲା । ସେହି କାରଖାନାରୁ ଆମେ ମୁଣ୍ଡରେ ଟୋପି ଲଗାଇ ଆସିଛୁ ।"

ଲୁହା କରେଇ କହିଲା, "ତା'ହେଲେ ତୁମେ ବି କେତେ ଜାଗା ଦେଖି ଆସିଲଣି ତ ।"

ଦିଆସିଲି କାଠି କହିଲା, "ହଁ ହଁ, ଆମେ ପେଡ଼ି ଭିତରେ ନିଧୋକାରେ ବସି ଗାଡ଼ି ମୋଟରେ ଚଢ଼ିଛୁ । କେତେ କେତେ ସହର ବଜାର ବୁଲିଛୁ । କିଛିଦିନ ହେଲା ଏ ରୋଷଘରକୁ ଆସିଛୁ ନା । ଏବେ ଆମର କାମ ହେଲା ଦୁନିଆରୁ ଅନ୍ଧାର ହଟାଇ ଆଲୁଅ ଆଣିଦେବା । ତେଣୁ ଆମେ ମନପ୍ରାଣ ଦେଇ ଜଳୁ । ବଡ଼ ଘରର ଛୁଆ ହୋଇଥିବାରୁ ଏ ଛୋଟ ସ୍ଥାନରେ ରହିଲେ ବି ଆମ ମନ ଛୋଟ ହୋଇ ଯାଇ ନାହିଁ । ପରର ଉପକାର କରିବାଟା ଆମର ଧର୍ମ । ନା କ'ଣ କହୁଛ ?"

ଦିଆସିଲି କାଠି କଥା ଶୁଣି ଲୁହା କରେଇ କହିଲା, "ଆହା ଭାଇ, ମୋ କଥା କ'ଣ କହିବି, ଦୁନିଆକୁ ଆସିବା ଦିନୁ ମୋ ଭାଗ୍ୟ ପୋଡ଼ି ଯାଇଛି; ଦିନ ନାହିଁ, ରାତି ନାହିଁ, ମତେ ସବୁବେଳେ ଜଳନ୍ତା ଚୁଲି ଉପରେ ବସିବାକୁ ପଡୁଛି । ପୁଣି ରୋଷେଇ ସରିଲେ, ସେ ଚାକରାଣୀଟା ରଗଡ଼ା ରଗଡ଼ା ବାଲି ଦେଇ ମୋ ଦେହଟାକୁ ଯେଉଁ ମାଜି ଦେଉଛି, ସେଥିରେ ଚମଡ଼ା ଉତାରି ହୋଇଯାଉଛି ଜାଣି ଥା । ଗାଧୋଇ ପାଧୋଇ ସଫାସୁତୁରା ହୋଇ ତୁମମାନଙ୍କ ପାଖରେ ଟିକିଏ ବସିପଡ଼ିଲେ ଦେହରେ ପ୍ରାଣ ପଶିଗଲା ପରି ଲାଗେ; ମନ ଖୋଲି ଦି'ପଦ ଗପ କରିବାକୁ ଇଚ୍ଛା ହୁଏ । କିନ୍ତୁ ଆମର କି ବିଷୟ ଅଛି ଯେ, ଆମେ ଗପ କରିବା ? ନେଉଳ ଦଉଡ଼ କିଆ ବାଡ଼କୁ । ଆମେ ରୋଷଘର ଓ ବାସନମଜା କୁଣ୍ଡ ଭିତରେ ଯାହା ଟିକିଏ ଯା ଆସ କରୁଛୁ । ଦୁନିଆର ଆମେ କ'ଣ ଦେଖିଲଇଁ ଯେ ଗପ କରିବା ?"

ଦିଆସିଲି ଦୀର୍ଘନିଃଶ୍ୱାସ ମାରି କରେଇକୁ ଚାହିଁ ରହିଲା । କରେଇ କହିଲା, "ଆମ ଭିତରୁ ହେଇ ହେଇ ସେ ବାଲ୍‌ତିଟା ଅବା କୂଅମୂଳଯାଏ ପଳାଉଛି, ଆଉ ସେ ପରିବା ଝୁଡ଼ିଟା

ଦିନେ ଦୁଇଦିନରେ ଥରେ ପରିବା ବଜାର ଯାଏଁ ଚାଲି ଯାଉଛି ।
ସେହିମାନଙ୍କଠାରୁ ଆମେ ଯାହା ଦି ପଦ ଖବର ଅନ୍ତର
ଶୁଣୁଛୁ ସେତିକି, —ଆମେ ସବୁ ଅଜ୍ଞ, ମୂର୍ଖ ।''

ଏ କଥା ଶୁଣି ଆତ୍ମଗର୍ବୀ ଦିଆସିଲି କାଠି କହିଲା,
''ଛାଡ଼, ସେ ଦୁନିଆଁ କଥା । ଆସ ଆଜି ଆମ ଭିତରେ
ଗୋଟିଏ ଖେଳ ଖେଳିବା; ଏହି ରୋଷଘରେ ଯେତକ ଚିଜ
ଥାଇଁ, ଏ ଭିତରୁ କାହା ଗୌରବ କେତେ ସେହି ବିଷୟ
ପଡୁ ।''

କରେଇ କହିଲା, ''ସେ ବେକାର କଥା ଛାଡ଼; ମୋର
ଏବେ କି ଗୌରବ ଅଛି ଯେ ସେ ଖେଳରେ ମିଶିବି ?
ବରଂ ଆସ, ଆମେ ଆମର ଜୀବନ କାହାଣୀ କହିଯିବା
ଯେ ମଜା ହେବ ।''

କରେଇ କଥା ଶୁଣୁ ଶୁଣୁ ରୋଷଘରର ଗିନାଥାଳିଗୁଡ଼ାକ
ତାଳି ମାରି କହିଲେ, ''ହଁ, ହଁ ।'' କରେଇ ତା ଜୀବନ
କାହାଣୀ ବନେଇ ଚୁନେଇ କହିଗଲା ଯେ, ରୋଷଘରର
ସମସ୍ତେ ଆନନ୍ଦରେ ଶୁଣିଗଲେ । ତା ଗପ ଶୁଣି ସମସ୍ତେ
ହସଖୁସିରେ ନାଚିଲେ । ବାଲ୍ତି ଇମିତି ନାଚିଲା ଯେ ତା
ଭିତରର ପାଣି ଉଛୁଳି ପଡ଼ିଲା । ଝାଡୁ ନାଚି ନାଚି ଘର
ତମାମ ବୁଲିଲା । ଥାଳିଆମାନେ ତାଳି ବଜାଇଲେ । ମୁଟା
ଗୋଟିଏ ଗୋଡ଼ ଟେକି ଆର ଗୋଡ଼ରେ ନାଚି ନାଚି ତାଳି
ବଜାଉଥାଏ । ତା ନାଚ ଦେଖି ରୋଷଘରର ସମସ୍ତେ ଠୋ
ଠୋ ହୋଇ ହସି ଉଠିଲେ । ହସୁ ହସୁ ରୋଷଘର ଚଉକିରେ
ପଡ଼ିଥିବା ଗଦିଟା ଫଟ୍ କରି ଫାଟିଗଲା । ହସି ହସି ବେଦମ୍
ହୋଇଯିବା ପରେ ସମସ୍ତେ ମିଶି କେଟ୍ଲିକୁ କହିଲେ, ''ଭାଇ,
ନାଚ ସରିଲା । ଏଥର ତୁ ଟିକିଏ ଗୀତ ଗାଆ; ବାବୁଙ୍କ
ବୈଠକଖାନାକୁ ତୁ ନିତି ଯାଉଛୁ । କେତେ ଗୀତ ଶୁଣୁଥିବୁ;

ସେଥିରୁ ପଦଟିଏ ଗାଅ ।''

କିନ୍ତୁ ଚାହା କେଟ୍‌ଲି କହିଲା, ''ଆରେ ଭାଇ ଦେଖୁନା, ମୋ ତୋଟିଟା କେତେ ସରୁଆ; ସେ ଭିତରେ କ'ଣ ଲାଗିଯାଇଛି କେଜାଣି, ଭାରି ଖରାପ ଲାଗୁଛି । ଏଥିରେ ମୁଁ ଗୀତ କିପରି ଗାଇବି ?'' କିନ୍ତୁ ଅସଲ କଥା ହେଲା ସବୁଦିନ ବାବୁଙ୍କ ବୈଠକଖାନାକୁ ଯାଇ ବାବୁଙ୍କ ଟେବୁଲରେ ବସିବା ଫଳରେ ତାକୁ ଗର୍ବ ଛୁଇଁଥାଏ; ରୋଷଘରର ଗିନା ଥାଳି, ଚଟୁ, ଚିମୁଟା, ହାଣ୍ଡି କରେଇଙ୍କ ପରି ଛୋଟ ଲୋକଙ୍କ ସହିତ ବେଶି କଥାଭାଷା ହେବାକୁ ତା'ର ଇଚ୍ଛା ନ ଥାଏ । ତା କଥା ଶୁଣି ରୋଷଘର ଝରକାରେ ରହିଥିବା ଗୋଟିଏ ଭଙ୍ଗା କଲମ କହିଲା, ''ତୋଟି ସରୁ ହେଲେ କଣ ହେଲା, କଣ ମୋ ତୋଟିଠାରୁ ବେଶି ସରୁ ? ରାନ୍ଧୁଣୀ ଆସି ତା'ର ହିସାବପତ୍ର ତ ଫେରେ ମୋରିଦ୍ୱାରା ଲେଖୁଛି; ମୁଁ କ'ଣ ତୋଟି ଖରାପ କଥା କହୁଛି ? ସେ ନ ଗାଇଲେ ନାହିଁ, ଚାଲ, ଆମ ମାଲିକିଆଣୀ ରୋଷଘର ବାରଣ୍ଡାରେ ଗୋଟିଏ ସାରୀ ପୋଷିଛନ୍ତି । ତାକୁ କହିବା ଯେ, ସେ ସୁନ୍ଦର ଗୀତ ଗାଇବ ।''

କିନ୍ତୁ ଚାହା କପ୍‌କୁ ଏକଥାଟି ସୁହାଇଲା ନାହିଁ; କାରଣ ସେ ହେଲା ଚାହା କେଟ୍‌ଲିର ସାନ ଭାଇ । ସେ ମୁହଁ ଫୁଲାଇ କହିଲା, ''ଏଇଟା ଗୋଟେ କଥାରେ କଥା । ଆମ୍ଭେ ଗୋଟିଏ ବିଦେଶୀ ଚଢ଼େଇର ଗୀତ ଶୁଣିବା କାହିଁକି ? ଆମ୍ଭ ଭିତରେ କ'ଣ ଏତିକି ବି ଦେଶପ୍ରେମ ନାହିଁ ? ବରଂ ମୁଁ ପରିବା ଝୁଡ଼ିକୁ କହୁଛି । ସେ ଗୋଟିଏ ଭଲ ଭଜନ ଗାଉ ।''

ପରିବା ଝୁଡ଼ି ଗଳା ସଫା କରି କହିଲା, ''ଏ ବାଜେ କଥାରେ ଆମେ ସମୟ ନଷ୍ଟ କରୁଥାଇଁ । ଆସ ବରଂ ଆମେ ଯେ ଯାହା ଜାଗାରେ ବସିଯିବା ଯେ, ଘରଟା ପରିଷ୍କାର

ଦେଖାଯିବ । ଆମେ ଏପରି ହଟଗୋଳ ଲଗାଇଲେ ଘରଟା ସୁନ୍ଦର ଦେଖାଯାଉଛି ଟି ? —ଯାଏ, ମୁଁ ଆଗେ ଯାଇ ମୋ ଜାଗାରେ ବସିଯାଏ ।''

ତା ଦେଖା ଦେଖି ଅନ୍ୟ ଜିନିଷସବୁ ଯେ ଯାହା ଜାଗାକୁ ଯାଇ ବସିଗଲେ । ତେବେ ସମସ୍ତଙ୍କ ମନରେ ଗୋଟିଏ ଦୁଃଖ ରହିଗଲା ଯେ, ସେମାନେ ନିଜ ନିଜ ବଡ଼ପଣିଆ ଶୁଣାଇ ପାରିଲେ ନାହିଁ । ସବୁଜିନିଷ ସଜାଇ ହୋଇଯିବା ଫଳରେ ଘରଟି ସୁନ୍ଦର ଦେଖାଗଲା । ଠିକ୍ ଏତିକିବେଳକୁ ରାନ୍ଧୁଣୀ ନାନୀ ଆସି ରୋଷଘର କବାଟ ଖୋଲିଦେଲା । ସେତେବେଳକୁ ସନ୍ଧ୍ୟା ହୋଇ ଆସୁଥାଏ । ରାନ୍ଧୁଣୀ ନାନୀ ଦୀପ ଲଗାଇବାକୁ ଗୋଟିଏ ଦିଆସିଲି କାଠି ଜାଳିଦେଲା । ଦିଆସିଲି ତ ନିଜକୁ ସବୁଠାରୁ ବଡ଼ ବୋଲି କହେ । ଅନ୍ଧାର ରାତିରେ ଆଲୁଅ ଦେବାର ଭାର ସେ ନିଜେ ମୁଣ୍ଡାଇଛି ବୋଲି ଦେଖାଇବାକୁ ଚାହୁଁଥିଲା । ତେଣୁ ସେ ସଙ୍ଗେ ସଙ୍ଗେ ହୁ ହୁ ହୋଇ ମନପ୍ରାଣ ଦେଇ ଜଳିଉଠିଲା । ଘରସାରା ଆଲୁଅ ହୋଇଗଲା । ତାର ସେ ଆଲୁଅ ଦେଖି ସମସ୍ତେ ତାକୁ ମନେମନେ ପ୍ରଶଂସା କଲେ । କହିଲେ, ''ସତରେ, ଦିଆସିଲି କାଠି ଦୁବଲାପତଳା ହୋଇ ଏତେ ଟିକିଏ ହେଲେ କ'ଣ ହେଲା, ଅନ୍ୟର ଉପକାର ପାଇଁ ସେହି ଏକା ନିଜକୁ ଜାଳିପୋଡ଼ି ଦେଇପାରେ ।''

ମହାଜନ ପୁଅର ଏ ଗପ ଶୁଣି ବାଦଶାହ ଓ ବେଗମ୍ ଉଭୟେ ଖୁସୀ ହୋଇଗଲେ । ଏ ଗପରେ ହସକୌତୁକ ଯେତିକି ମିଳିଲା, ନୀତିଶିକ୍ଷା ବି ସେତିକି ମିଳିଲା । ତେଣୁ ସେମାନେ ଶାହଜାଦୀଙ୍କ ସହିତ ମହାଜନ ପୁଅର ବାହାଘର ପାଇଁ ରାଜି ହୋଇଗଲେ । ଦିନବାର ଠିକ୍ ହୋଇଗଲା । ସହର ସଜାଗଲା । ଲୋକଙ୍କୁ ମିଠାଇ ବଣ୍ଟାଗଲା । ମହାଜନ

ପୁଅ ବି ଉଡ଼ନ୍ତା ସିନ୍ଦୁକରେ ଉଡ଼ି ଉଡ଼ି **ଆକାଶମାର୍ଗରୁ** ବାଣ ମାରିଲା । ସେ ବାଣ ଦେଖି ଲୋକେ କହିଲେ, "ସତରେ ବାଦଶାହଙ୍କ ଜ୍ୱାଇଁ ସ୍ୱର୍ଗଲୋକର ଅଧିବାସୀ ହେବେ; ନ ହେଲେ କି **ଆକାଶମାର୍ଗରେ** ଉଡ଼ି ବାଣ ମାରି ପାରିଥାନ୍ତେ ।"

ତା ବାଣମାରା ଦେଖାଦେଖି ବାଦଶାହଙ୍କ ପକ୍ଷରୁ ବି ବାଣମରା ଚାଲିଲା । ବାହାଘର ଆଉ ଦିନେ ଥାଏ । ମହାଜନ ପୁଅ ବଣ ଭିତରେ ବୁଲି ବୁଲି ହାଉଆ ଖାଉଛି, ଏ ସମୟରେ ଗୋଟିଏ ବାଣର ନିଆଁ ଆସି ତା ସିନ୍ଦୁକରେ ପଡ଼ିଗଲା । କାଠ ସିନ୍ଦୁକଟି ନିଆଁରେ ପୋଡ଼ି କେତେବେଳେ ଯେ ପାଉଁଶ ହୋଇଗଲା, ସେ ବିଚରା ଜାଣେନି । ଯେତେବେଳେ ସେ ବୁଢା ପାଖକୁ ଫେରେ, ଆଉ ସିନ୍ଦୁକ ପାଇଲା ନାହିଁ କି ଶାହଜାଦୀଙ୍କୁ ବାହା ହେବାକୁ ଯାଇପାରିଲା ନାହିଁ ।

ସେହିଦିନଠାରୁ ଶାହଜାଦୀ ବାହାବେଦୀରେ ଜଗି ବସିଛନ୍ତି ଏବଂ ମହାଜନ ପୁଅ ଗପ କହି କହି ଦୁନିଆ ସାରା ବୁଲୁଛି । କିନ୍ତୁ ବାଦଶାହ ଓ ବେଗମ୍‌ଙ୍କୁ ଯେଉଁ ଗପଟି କହିଥିଲା, ସେପରି ଗପ ଆଉ କହିପାରୁ ନାହିଁ ।

